ଆଦାନ ପ୍ରଦାନ

# ସାଂପ୍ରତିକ
# ଓଡ଼ିଆ କବିତା

ସଂପାଦକ
ନିତ୍ୟାନନ୍ଦ ଶତପଥୀ



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# ସୂଚୀ

| | | |
|---|---|---|
| *ସାଂପ୍ରତିକ ଓଡିଆ କବିତା* | | 1 |
| ପରିଚୟ ପତ୍ର | ସଚ୍ଚିଦାନନ୍ଦ ରାଉତରାୟ | 31 |
| ପ୍ରବଞ୍ଚନା | ରଘୁନାଥ ଦାସ(ଜଟାୟୁ) | 32 |
| ଦେହର ନିର୍ଲ୍ଲଜ ଭୋକ | ଗୁରୁପ୍ରସାଦ ମହାନ୍ତି | 35 |
| ନଈ ଆର ପାରି | ଭାନୁଜୀ ରାଓ | 36 |
| ଦେବୀ | ଦୁର୍ଗାଚରଣ ପରିଡା | 37 |
| ଆତ୍ମପୀଡନ | ରବି ସିଂ | 38 |
| ଚାରି ବଖରା ଘର | ଉମାଶଙ୍କର ପଣ୍ଡା | 40 |
| ଭାବନା: ନବବର୍ଷର | ବିପିନ ବିହାରୀ ଖମାରୀ | 42 |
| ମୁଗ୍ଧ ହୋଇ ରହିଚି ଅନାଇ | ଶ୍ରୀନିବାସ ଉଦ୍‌ଗାତା | 44 |
| ଶରତର ରାତିଟିଏ | ରମାକାନ୍ତ ରଥ | 46 |
| ଭାରତବର୍ଷ: ୧୯୯୦ | ମନୋଜ ଦାସ | 48 |
| ପ୍ରଦକ୍ଷଣ | ବ୍ରହ୍ମୋତ୍ରୀ ମହାନ୍ତି | 49 |
| କାଉ ପ୍ରଜାପତି ସମ୍ବାଦ | ଶରତଚନ୍ଦ୍ର ପ୍ରଧାନ | 50 |
| ଦୁଇଟି କବିତା | କମଳାକାନ୍ତ ଲେଙ୍କା | 52 |
| ଆତ୍ମ - ନିବେଦିତା | ମନୋରମା ମହାପାତ୍ର | 54 |
| କିପରି ଗାଇବି ଅବା | ନୃସିଂହ କୁମାର ରଥ | 55 |
| କାଗଜ ଡଙ୍ଗା | ବିବେକ ଜେନା | 56 |
| ଭାଙ୍ଗିପଡୁଥିବା ଦୁର୍ଗର | ଜଗନ୍ନାଥ ପ୍ରସାଦ ଦାସ | 57 |
| ଦୁଇଟି ସନେଟ୍ | ବିଭୁଦତ୍ତ ମିଶ୍ର | 59 |
| ଓଟ | ବ୍ରଜନାଥ ରଥ | 61 |
| ଖରାବେଳ | ସୀତାକାନ୍ତ ମହାପାତ୍ର | 63 |
| ଆଖିରୁ ଆଖିକୁ ନାଚେ ମୃତ୍ୟୁ | ଦୀପକ ମିଶ୍ର | 66 |
| ଆସ ବା ନ ଆସ | ସୌରୀନ୍ଦ୍ର ବାରିକ | 69 |

| | | |
|---|---|---|
| ଖାଇ | ବ୍ରହ୍ମାନନ୍ଦ ଦାସ | 71 |
| ଶରତ | ଧ୍ରୁବ ଖୁଣ୍ଟିଆ | 72 |
| କୈବର୍ତ୍ତ | ସୌଭାଗ୍ୟ କୁମାର ମିଶ୍ର | 73 |
| ହାଟବାହୁଡା | ନିତ୍ୟାନନ୍ଦ ନାୟକ | 75 |
| କାଠଘୋଡା | ଜୟକୃଷ୍ଣ ବାରିକ | 77 |
| କିମ୍ବଦନ୍ତୀ | ବଂଶୀଧର ଷଡଙ୍ଗୀ | 79 |
| କେଲୁଣୀ | ହରିହର ମିଶ୍ର | 81 |
| ଶିଶୁର ନିର୍ମଳ ହାସ୍ୟ | ପ୍ରସନ୍ନ କୁମାର ମିଶ୍ର | 83 |
| ଆକାଶ | ବନଜ ଦେବୀ | 85 |
| ବିଧବା | ନିତ୍ୟାନନ୍ଦ ପତି | 86 |
| କଳାହାଣ୍ଡି | ସରୋଜ ରଞ୍ଜନ ମହାନ୍ତି | 88 |
| ସମୁଦ୍ର ଢେଉରୁ ଆସ | ପ୍ରହରାଜ ସତ୍ୟନାରାୟଣ ନନ୍ଦ | 90 |
| ପୃଥିବୀର ଶେଷ ପଦାତିକଟି | ଲକ୍ଷ୍ମୀନାରାୟଣ ମହାପାତ୍ର | 92 |
| ଦେବୀ | ପ୍ରମୋଦ କୁମାର ମହାନ୍ତି | 94 |
| ଭବିଷ୍ୟ ମାଳିକା | ଦିଲୀପ ଦାସ | 95 |
| ସ୍ୱର୍ଗାଦପି ଗରୀୟସୀ | ନିରଂଜନ ଧାଡ଼ୀ | 96 |
| ଜୀବନ ଓ ମରଣରେ ତୁମେ ହିଁ ସୁନ୍ଦର | ଫନୀ ମହାନ୍ତି | 98 |
| ଆଶ୍ୱାସ | ରାଜେନ୍ଦ୍ର କିଶୋର ପଣ୍ଡା | 100 |
| ନୀଳକଣ୍ଠ | ବିଜୟିନୀ ଦାସ | 102 |
| କଥା | ହରପ୍ରସାଦ ଦାସ | 104 |
| ଅମୃତ ମଣୋହି | ଶକୁନ୍ତଳା ଦେବୀ | 105 |
| ଓଡ଼ିଶା | ନୃସିଂହ ପ୍ରସାଦ ତ୍ରିପାଠୀ | 107 |
| କେତେଦୂର | ଗୋପାଳକୃଷ୍ଣ ରଥ | 109 |
| ନିଷ୍ଫଳ ଅଭିସାର | ପ୍ରତିଭା ଶତପଥୀ | 111 |
| ଅଗଷ୍ଟ ପନ୍ଦର: ଲାଲକିଲା ଓ ଧଉଳି | ସଦାଶିବ ଦାଶ | 114 |
| ଚଣ୍ଡାଳ | ଆଶୁତୋଷ ପରିଡ଼ା | 116 |
| ସ୍ଫୁଲିଙ୍ଗ | ପ୍ରସନ୍ନ ପାଟଶାଣୀ | 118 |
| ସ୍ୱର୍ଗ ନର୍କ ଓ ମଲ୍ଲିକା | ଦେବଦାସ ଛୋଟରାୟ | 119 |
| ନିଶବ୍ଦ ନିଃଶ୍ୱାସ | ନୀଳାଦ୍ରି ଭୂଷଣ ହରିଚନ୍ଦନ | 120 |
| ଅପର ଈଶ୍ୱର | ଗିରିବାଳା ମହାନ୍ତି | 121 |
| ଅବତାର | ମମତା ଦାଶ | 122 |

| | | |
|---|---|---|
| ନିଜ ନଈ: ପ୍ରବାସୀ ନାଉରୀ | ଅମରେଶ ପଟ୍ଟନାୟକ | 124 |
| ବିଷାଦର ନଈକୂଳେ | ମନୋରମା ବିଶ୍ୱାଳ ମହାପାତ୍ର | 125 |
| ସମୁଦ୍ର ଓ ଚିତ୍ରକର | ସୌଭାଗ୍ୟବନ୍ତ ମହାରଣା | 127 |
| ସକାଳ ନ ପାହୁଣୁ | ଶୁଭେନ୍ଦୁ ମୁଣ୍ଡ | 128 |
| କଟକରେ ଖରାଦିନିଆ ବର୍ଷା | ଭଗବାନ ଜୟସିଂହ | 129 |
| ସ୍ପଷ୍ଟ କଥନ | ଅପର୍ଣ୍ଣା ମହାନ୍ତି | 131 |
| ଅବତରଣ | ଅଶ୍ୱିନୀ କୁମାର ମିଶ୍ର | 134 |
| ଆଉ ଦିନେ ତମ କଥା ଲେଖିବି | ହରପ୍ରସାଦ ପରିଚ୍ଛା ପଟ୍ଟନାୟକ | 136 |
| ଦକ୍ଷିଣ ଦିଗକୁ ଯାଅ | ରୋହିଣୀକାନ୍ତ ମୁଖାର୍ଜୀ | 138 |
| ମହୁମାଛିର ଗୀତ | ରଞ୍ଜିତା ନାୟକ | 139 |
| ଛଦ୍ମବେଶ | ହୃଷିକେଶ ମଲ୍ଲିକ | 141 |
| ଆଫ୍ରିକା | ଶତ୍ରୁଘ୍ନ ପାଣ୍ଡବ | 143 |
| ଭିଟାମାଟି | ହୃଦାନନ୍ଦ ପାଣିଗ୍ରାହୀ | 145 |
| ତମେ ନିଜେ ପ୍ରେମ | ପ୍ରବାସିନୀ ମହାକୁଡ଼ | 146 |
| ମାତ୍ର ଗୋଟିଏ ଜନ୍ମ | ପ୍ରସନ୍ନ କୁମାର ମହାନ୍ତି | 148 |
| ଭୁଲ୍ ସମୟର ଠିକ୍ ଚରିତ୍ର ପାଇଁ | ଅମରେନ୍ଦ୍ର ଖଟୁଆ | 150 |
| ବାପା | ଭାଗୀରଥି ମିଶ୍ର | 152 |
| ଭୟ | ସୂର୍ଯ୍ୟ ମିଶ୍ର | 153 |
| ଦେଖା ସେପାଖ ଲୋକଟି | ପ୍ରଦୀପ ବିଶ୍ୱାଳ | 154 |
| ଚିତ୍ରକର | ମାନସ ରଂଜନ ମହାପାତ୍ର | 156 |
| ସେ ଲୋକ | ସୁଚେତା ମିଶ୍ର | 157 |
| କବି ପରିଚୟ | | 159 |

# ସାଂପ୍ରତିକ ଓଡିଆ କବିତା

ପ୍ରୟୋଗବାଦୀ ଓଡିଆ କବିତାର ସମୟସୀମାକୁ ଯଦି ୧୯୪୭-୬୭ ମଧ୍ୟରେ ଚିହ୍ନିତ କରାଯାଏ ତେବେ ଏହାର ଉତ୍ତରକାଳକୁ ନିର୍ବିବାଦରେ ସାଂପ୍ରତିକ କବିତାର ସମୟଭାବେ ଚିହ୍ନିତ କରାଯାଇପାରିବ। ପ୍ରୟୋଗବାଦୀ କାବ୍ୟଚେତନାର ନେତୃତ୍ୱ ନେଇଥିଲେ କବି ସଚ୍ଚିଦାନନ୍ଦ ରାଉତରାୟ ଓ କବି ଗୁରୁପ୍ରସାଦ ମହାନ୍ତି। କବିତାର ଭାବ ଓ ଭାଷାରେ ଏମାନେ ନାନାଦି ପରୀକ୍ଷା ପ୍ରଚଳନ କରିଥିଲେ ଓ ଏମାନଙ୍କ ସହ ସାମିଲ ହୋଇଥିଲେ ଭାନୁଜୀ ରାଓ, ରମାକାନ୍ତ ରଥ, ବେଣୁଧର ରାଉତ, ବିନୋଦଚନ୍ଦ୍ର ନାୟକ, ସୀତାକାନ୍ତ ମହାପାତ୍ର, ସୌଭାଗ୍ୟ ମିଶ୍ର, ଦୀପକ ମିଶ୍ର, କମଳାକାନ୍ତ ଲେଙ୍କା ଆଦି କବିମାନେ। ପ୍ରୟୋଗବାଦୀ କବିତା ସଂପର୍କରେ ପାଠକମାନଙ୍କର ଖୁବ୍ ଶକ୍ତିଶାଳୀ ଅଭିଯୋଗ ଥିଲା ଯେ ତାହା ଅପ୍ରକଟ ଓ ଦୁର୍ବୋଧ୍ୟ। ଏ ଅଭିଯୋଗକୁ ବେଶୀ ପରିମାଣରେ ସାବ୍ୟସ୍ତ କରିଥିଲା ସଚ୍ଚିଦାନନ୍ଦଙ୍କ 'ସ୍ୱଗତ', କବିତା - ୧୯୬୨, ରମାକାନ୍ତଙ୍କ 'ଅନେକ କୋଠରୀ', ଦୀପକ ମିଶ୍ରଙ୍କ 'ଅନୁଷ୍ଟୁପ୍', ସୌଭାଗ୍ୟମିଶ୍ରଙ୍କ 'ମଧ୍ୟପଦଲୋପୀ', କମଳାକାନ୍ତଙ୍କ ପରୀକ୍ଷା ମୂଳକ କାବ୍ୟଗ୍ରନ୍ଥ 'ଉତ୍ତରଣ'। ଏପରିକି ସଂପୂର୍ଣ୍ଣ ଗଦ୍ୟଧାରାରେ ରଚିତ କେତୋଟି ସୃଷ୍ଟିକୁ କବିତାନାମରେ ଚଳେଇନେବାକୁ ଏହି ସମୟରେ ମଧ୍ୟ ଉଦ୍ୟମ ଆରମ୍ଭ ହୋଇଥିଲା। ଏପରି କବିତା ରଚନାରେ ୧୯୩୯ ମସିହାରେ ସଚ୍ଚିବାବୁ ସାମାନ୍ୟତମ ପରୀକ୍ଷା ତାଙ୍କ 'ଟେବୁଲ' କବିତାରେ ଆରମ୍ଭ କରି ଏପରି ପରୀକ୍ଷାକୁ ବର୍ଜନ କରିଆସିଥିଲେ। କିନ୍ତୁ ବରିଷ୍ଠ କବି ଭାନୁଜୀ ରାଓ ('ସ୍ତନ' ଓ 'ବାହୁଡ଼ା') ସୀତାକାନ୍ତ (ଲଣ୍ଡନ, ମଧ୍ୟରାତ୍ରି), କୁଞ୍ଜବିହାରୀ (ମଂଜରୀ ଭାବୁଚି ଭାବୁଚି) ଏବଂ କବି କମଳାକାନ୍ତ (ଉତ୍ତରଣ) ଓ ପରବର୍ତ୍ତୀ ସମୟରେ ରାଜେନ୍ଦ୍ର କିଶୋର ପଣ୍ଡା (ଅନବତାର) ଏପରି କାବ୍ୟ ପରୀକ୍ଷାରେ ସଫଳ ନହୋଇଥିଲେ ମଧ୍ୟ ଉଦ୍ୟମ ଜାରିରଖିଥିଲେ। କିନ୍ତୁ ଓଡିଆ କବିତାର ପାଠକମାନେ ଏପରି ପରୀକ୍ଷାକୁ ଆଦର କରି ନଥିବାରୁ ସାଂପ୍ରତିକ କବିତା କାଳଖଣ୍ଡରେ ଏପରି ଆଂଗିକ କ୍ରମେ ଅଚଳ ହୋଇ ଯାଇଥିବା ଲକ୍ଷ୍ୟ କରାଯାଇଛି। ପୁନଶ୍ଚ ଦ୍ୱିତୀୟ ପୃଥିବୀମହାଯୁଦ୍ଧ ପରବର୍ତ୍ତୀ ସମାଜ-ଆର୍ଥନୀତିକ ବିଷମ ପରିସ୍ଥିତି ତଥା ସ୍ୱାଧୀନତା ପରବର୍ତ୍ତୀ ସମାଜ-ରାଜନୈତିକ ଦୁରବସ୍ଥା ଓ ତଦ୍‌ଜନିତ ମୋହଭଂଗ, ନାନାଦି ମନୋବୈଜ୍ଞାନିକ ପରୀକ୍ଷା ପ୍ରୟୋଗବାଦୀ କବିତା ପାଇଁ କାବ୍ୟ-ଉପାଦାନ ଯୋଗାଇଥିଲାବେଳେ ସାଂପ୍ରତିକ କବିତା କ୍ରମେ ଏପରି ଆଭିମୁଖ୍ୟକୁ ପରିହାର କରିଆସିଛି ଓ ଅଧିକରୁ ଅଧିକ ପରିଚ୍ଛନ୍ନ ତଥା ଆବେଦନକ୍ଷମ ହେବାକୁ ପ୍ରୟାସ ଜାରିରଖିଛି। ୧୯୬୭ ମସିହା ସୁଦ୍ଧା ପ୍ରୟୋଗବାଦୀ କବିତାର ଆଭିମୁଖ୍ୟ ଓ ଆଗିଂକ ସଂପର୍କିତ ସମସ୍ତ ପରୀକ୍ଷା ଓ ପ୍ରୟୋଗ ପ୍ରାୟ ଏକ ସ୍ଥିରବିନ୍ଦୁରେ ପହଂଚିଯାଇଛି। କାବ୍ୟ ପାଠକମାନଙ୍କ କ୍ରମାଗତ ଅଭିଯୋଗକୁ କବିମାନେ ଆଉ କେତେଦିନ ବା ଉପେକ୍ଷା କରି ପାରିଥା'ନ୍ତେ? ତେଣୁ ସେମାନେ ପାଠକ

ପାଖରେ ପହଂଚିବାକୁ ପ୍ରାୟ ସଚେତନ ହୋଇଉଠିଛନ୍ତି ଓ ସେଥିପାଇଁ ଅଯଥା ବ୍ୟକ୍ତିଗତତା, ବୌଦ୍ଧିକତା ଓ ଅତିରିକ୍ତ ବ୍ୟଂଜନାଧର୍ମିତା (Irony) କୁ ଛାଡ଼ି ଅଧିକରୁ ଅଧିକ ସରଳତାର ଆଶ୍ରୟ ନେଇଛନ୍ତି। ସଚ୍ଚିବାବୁ, ଗୁରୁପ୍ରସାଦ, ବେଣୁଧର, ରାଧାମୋହନ ଓ ବିନୋଦଚନ୍ଦ୍ରଙ୍କ ପରି ବରିଷ୍ଠ କବିମାନେ ୧୯୬୭ ବେଳକୁ କେହି କେହି ଅବକ୍ଷୟର ଶିକାର ହୋଇଛନ୍ତି ଓ କେହି କେହି କବିତାରେ କ୍ଷୀଣାୟୁ-ପ୍ରୟାସ ଜାରିରଖି କ୍ରମେ ନିର୍ବାଣମୁଖୀ ହୋଇପଡ଼ିଛନ୍ତି। ଅବଶ୍ୟ ନିର୍ବାଣମୁଖୀ ପ୍ରଦୀପର ଶେଷଝଲକ ପରି କେବେକେବେ ସେମାନଙ୍କ କଲମରୁ ଗୋଟିଏ ଦୁଇଟି ଭଲ କବିତା ଯେ ଉଭୁରି ନଆସିଚି ସେକଥା ଆମେ ଅସ୍ୱୀକାର କରୁନାହୁଁ। କିନ୍ତୁ ସାମଗ୍ରିକଭାବେ ଓଡ଼ିଆ କବିତାର ପ୍ରେକ୍ଷାପଟକୁ ଲକ୍ଷ୍ୟକଲେ ସ୍ପଷ୍ଟ ପ୍ରତିଭାତ ହେବ ଯେ ୧୯୬୭ ପରେ ସେମାନଙ୍କଠାରୁ କାବ୍ୟନେତୃତ୍ୱ ରମାକାନ୍ତ ଓ ସୀତାକାନ୍ତ ଛଡ଼େଇ ନେଇଛନ୍ତି ଓ ଏ ଦୁଇ କବିଙ୍କ ସହିତ ପରବର୍ତ୍ତୀ ପଚିଶବର୍ଷ (୧୯୬୭-୯୨) ମଧ୍ୟରେ ବହୁ ସଫଳ ଶକ୍ତିଶାଳୀ ତରୁଣ କବି ସାମିଲ ହୋଇଛନ୍ତି। ଏଇଥିପାଇଁ ଆମେ ସାଂପ୍ରତିକ ପରି ଏକ ସମୟବାଚୀ କାଳକୁ ଆକଳନ କଲାବେଳେ ଗତ ପଚିଶବର୍ଷର କବିତାକୁ ଅର୍ଥାତ୍ ଓଡ଼ିଆ କବିତାରେ ସ୍ୱାଧୀନତା ପରେ ଆରମ୍ଭ ହୋଇଥିବା ପରୀକ୍ଷା ନିରୀକ୍ଷାର ଉତ୍ତର ପର୍ଯ୍ୟାୟକୁ ସାଂପ୍ରତିକ କାଳଖଣ୍ଡ ଭାବେ ବିବେଚନା କରି ସେହିପରି ଚେତନାକୁ ସଂପ୍ରଦୀପ କରିଥିବା ବରିଷ୍ଠ ଓ କନିଷ୍ଠ ପ୍ରାୟ ପଞ୍ଚସ୍ତରୀ ଜଣ କବିଙ୍କ କବିତାକୁ ଏହି ସଂକଳନ ଅନ୍ତର୍ଭୁକ୍ତ କରିଅଛୁ।

ଏହି ସମୟ ଖଣ୍ଡର କାବ୍ୟଭାବନାକୁ ଏହି ସଂକଳନରେ ପ୍ରତିଫଳିତ କରିବାର ଅନ୍ୟତମ କାରଣ ମଧ୍ୟ ରହିଅଛି। ତା' ହେଲା ଭାରତ ସରକାରଙ୍କ ନ୍ୟାସନାଲ ବୁକ୍ ଟ୍ରଷ୍ଟ ତରଫରୁ ୧୯୭୩ ଜାନୁୟାରୀରେ ପ୍ରକାଶିତ ହୋଇଥିବା ସଂକଳନଟି ପ୍ରାୟ ସ୍ୱାଧୀନତା ପରବର୍ତ୍ତୀ ପ୍ରୟୋଗବାଦୀ ଓ ପାରଂପରିକ କାବ୍ୟଧାରାର ସଂକ୍ଷିପ୍ତ ପ୍ରତିନିଧିତ୍ୱ କରିଥିଲା। ତହିଁରେ ସ୍ୱାଧୀନତାର ପୂର୍ବ ଓ ପରବର୍ତ୍ତୀ କବିଭାବେ ବୀରକିଶୋର ଦାସଙ୍କ ଠାରୁ ଗୁରୁପ୍ରସାଦ ମହାନ୍ତିଙ୍କ ପର୍ଯ୍ୟନ୍ତ ଯେଉଁ ଅଠରଜଣ କବିଙ୍କୁ ଅନ୍ତର୍ଭୁକ୍ତ କରାଯାଇଥିଲା, ଏହି ସାଂପ୍ରତିକ କବିତା ସଂକଳନରେ ସେମାନଙ୍କ ମଧ୍ୟରୁ ଅନେକଙ୍କୁ ସଂକଳନଭୁକ୍ତ କରିବାର କୌଣସି ସୁଯୋଗ ମୁଁ ପାଉନାହିଁ। ଅର୍ଥାତ୍ ସମକାଳୀନତା (Contemporanity) ବିଚାରରୁ ତେଣୁ ବାଧ୍ୟହୋଇ ବୀରକିଶୋର ଦାସ, ବୈକୁଣ୍ଠନାଥ ପଟ୍ଟନାୟକ, କାଳିନ୍ଦୀ ଚରଣ ପାଣିଗ୍ରାହୀ, ଗୋଦାବରୀଶ ମହାପାତ୍ର, ମାୟାଧର ମାନସିଂହ, ରାଧାମୋହନ ଗଡ଼ନାୟକ, କୁଂଜବିହାରୀ ଦାଶ, ଜ୍ଞାନୀନ୍ଦ୍ର ବର୍ମା, ନିର୍ମଳା ଦେବୀ, ବିନୋଦଚନ୍ଦ୍ର ନାୟକ, ବେଣୁଧର ରାଉତ, ଜାନକୀ ବଲ୍ଲଭ ମହାନ୍ତି, ଗୋପାଳଚନ୍ଦ୍ର ମିଶ୍ର, ଚିନ୍ତାମଣି ବେହେରା, ବିଦ୍ୟୁତପ୍ରଭା ଦେବୀଙ୍କୁ ଏହି ସାଂପ୍ରତିକ କବିତା ସଂକଳନରୁ ବାଦ ଦିଆଯାଇଛି। ସୁଧୀ ପାଠକବର୍ଗ ଏବେ ନିଶ୍ଚୟ ଏ ସଂକଳନର ସମୟସୀମା ଓ ଆଭିମୁଖ୍ୟକୁ ଉପଲବ୍ଧି କରିପାରିବେ।

ଓଡ଼ିଆ କବିତା ସଂକଳନ (ଏନ୍‌ବିଟି, ୧୯୭୩) ରେ ସଂକଳକ ଶ୍ରୀ ମନୋଜ ଦାସ କେତେଜଣ କବିଙ୍କ ପ୍ରତି କିଛି ତରଫସାନି କରିଥିଲେ। ସେମାନେ ହେଲେ ନିଜେ ସଂକଳକ ଶ୍ରୀ ମନୋଜ ଦାସ, ଶ୍ରୀ ଦୁର୍ଗାଚରଣ ସାମନ୍ତ, ଶ୍ରୀ ବିବେକ ଜେନା ଓ ଶ୍ରୀ ଦୁର୍ଗାଚରଣ ପରିଡ଼ା। ଏ ଚାରି କବିଙ୍କ ମଧ୍ୟରୁ ସ୍ୱର୍ଗତ ସାମନ୍ତଙ୍କ ପରି ରୋମାଣ୍ଟିକ୍ - ବାମପନ୍ଥୀ

କବିଙ୍କର ଶଂସିତ କାଳଖଣ୍ଡରେ (୧୯୬୭-୯୨) ସୃଷ୍ଟିପ୍ରୟାସ ପ୍ରାୟ ନିର୍ବାତ ହୋଇଯାଇଛି। ତେଣୁ ସ୍ୱର୍ଗତ ବିବେକ ଜେନା ଓ ଶ୍ରୀ ଦୁର୍ଗାଚରଣ ପରିଡାଙ୍କୁ ଏହି ସଂକଳନରେ ସ୍ଥାନିତ କରାଯାଇଛି ଯଦିଓ କାବ୍ୟଚେତନା ଦୃଷ୍ଟିରୁ ତାଙ୍କର ସାଂପ୍ରତିକତା ସହିତ ବିଶେଷ କିଛି ସଂପର୍କ ନିରୂପିତ ହୋଇପାରୁନାହିଁ। ଅର୍ଥାତ୍ ଇନ୍ଦ୍ରାୟୁଧ (୧୯୬୧) ପ୍ରକାଶ ପରେ କବିଙ୍କ (ଶ୍ରୀ ଦୁର୍ଗା ଚରଣ ପରିଡା) କାବ୍ୟ ଭାବନାରେ କୌଣସି ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଆସିନାହିଁ। ଆଉ ଜଣେ ଶକ୍ତିଶାଳୀ ବାମପନ୍ଥୀ କବି ଶ୍ରୀ ରଘୁନାଥ ଦାସଙ୍କୁ ସଂକଳକ ଶ୍ରୀ ମନୋଜ ଦାସ ହୁଏତ ଆବିଷ୍କାର କରି ପାରିନଥିଲେ। ତା' ହେଲେ କାଳିନ୍ଦୀ ବାବୁଙ୍କ ଦୀର୍ଘ କବିତା 'ନୂଆ ତିଥି'କୁ ସେ ସଂକଳନ ପରିସରଭୁକ୍ତ ନକରି 'ଅଗଷ୍ଟ ପନ୍ଦର ୧୯୪୭', '୧୯୪୮, ୧୯୪୯' ଏହି ତିନୋଟି କବିତାରୁ ନିଶ୍ଚୟ ଗୋଟିକୁ ବାଛିଥା'ନ୍ତେ। କାରଣ ଭାବ ଓ ଶୈଳୀଦୃଷ୍ଟିରୁ ସ୍ୱାଧୀନତା ପରବର୍ତ୍ତୀ ପରିସ୍ଥିତି ଓ ମୋହଭଂଗକୁ ଶକ୍ତିଶାଳୀ, ପ୍ରୟୋଗକୁଶଳ କାବ୍ୟଭାଷା ଓ ଉନ୍ନତ କାବ୍ୟଶୈଳୀରେ ଏ ତିନୋଟି କବିତାରେ ପ୍ରକାଶ କରାଯାଇଛି। ଏ ସଂକଳନରେ ଆମେ ଶ୍ରୀ ରଘୁନାଥ ଦାସଙ୍କୁ ନୁହେଁ 'ଶ୍ରୀ ଜଟାୟୁ' (ଯଦିଓ ଏହା ସେଇ କବିଙ୍କ ଛଦ୍ମନାମ)ଙ୍କୁ ହିଁ ସ୍ଥାନିତ କରିବାର ପ୍ରଲୋଭନ ରଖିଛୁ କେବଳ ୧୯୩୫-୩୬ ପରବର୍ତ୍ତୀ ଆସକ୍ତ ସମାଜନିର୍ଭର କାବ୍ୟପ୍ରୟାସକୁ ସ୍ମରଣ କରିବା ପାଇଁ ନୁହେଁ, ୧୯୬୭ ମସିହା ପରବର୍ତ୍ତୀ ସମାଜ-ଆର୍ଥନୀତିକ ଓ ରାଜନୈତିକ ପରିସ୍ଥିତି ଦୃଷ୍ଟିରୁ ତଥାପି ସେଇ ଗତାୟୁ ଆଭିମୁଖ୍ୟର କଳାତ୍ମକ ପରିଚ୍ଛନ୍ନ ପରିପ୍ରକାଶ ଓ ପ୍ରତିବଦ୍ଧ ପ୍ରୟାସ ପାଇଁ। ସଂକଳିତ କବିତାଟିକୁ ପଢ଼ିବାମାତ୍ରେ ପାଠକେ ଏହି କବିଙ୍କ ଶକ୍ତିଶାଳୀ କାବ୍ୟଭାଷା ଓ ଅଭିବ୍ୟକ୍ତିକୁ ନିଶ୍ଚୟ ହୃଦୟଙ୍ଗମ କରିବେ ଓ ଏ ସ୍ୱରର ସାଂପ୍ରତିକ ପ୍ରାସଂଗିକତା (relevance) କୁ ତାରିଫ୍ କରିବେ। କବି ସ୍ୱର୍ଗତ ଶ୍ରୀ ରଘୁନାଥ ଦାସ 'ଶ୍ରୀ ଜଟାୟୁ' ଛଦ୍ମନାମରେ ୧୯୭୩ ରୁ ପୁନଶ୍ଚ ଆତ୍ମ-ପ୍ରକାଶ କରି ୧୯୮୫ ପର୍ଯ୍ୟନ୍ତ ଲେଖନୀ ଚାଳନା କରିଥିଲେ। ସମସାମୟିକ କବି ସଚ୍ଚିଦାନନ୍ଦ ତାଙ୍କ ବାମପନ୍ଥୀ କାବ୍ୟସ୍ୱରକୁ ପରିହାର କରି ଶଂସିତ ସମୟରେ ଏକ ଭିନ୍ନଧାରାରେ କବିତା ରଚନା କରୁଥିଲାବେଳେ ଶ୍ରୀ ଦାସ ତଥାପି କେଉଁ ଦୁର୍ବାର ବିଶ୍ୱାସରେ ସମାଜକୁ ସଚାଡିବାକୁ ତାଙ୍କର ବ୍ୟଙ୍ଗାତ୍ମକ କବିତାର ଶରବର୍ଷଣ କରିଚାଲିଥିଲେ— ଏହା ଏକାନ୍ତ ପ୍ରଣିଧାନର ବିଷୟ।

ସାଂପ୍ରତିକ କବିତା ସଂପର୍କରେ ନାନାଦି ଆଲୋଚନା ପତ୍ରପତ୍ରିକାମାନଙ୍କ ପୃଷ୍ଠା ମଣ୍ଡନ କରିଛି। ତେଣୁ ଏ ସଂପର୍କରେ ଅଧିକ ତର୍ଜମା କରିବା ନିଷ୍ପ୍ରୟୋଜନ। ତେବେ ଯେଉଁ କବିତାଗୁଡ଼ିକୁ ଏ ସଂକଳନ ପାଇଁ ବଛାଯାଇଛି ତାକୁଇ ଅବଲମ୍ବନ କରି ଓ ସେଇ କବିଙ୍କ ଅନ୍ୟାନ୍ୟ ସୃଷ୍ଟି ସମ୍ଭାରକୁ ନେଇ କିଛି ଆଲୋଚନା କରାଯାଇ ପାରେ। ଏସବୁ କବିତା ପୁନଶ୍ଚ ସେହି ସେହି କବିଙ୍କର ଶ୍ରେଷ୍ଠ କବିତା ବୋଲି ମଧ୍ୟ ମୁଁ ଦାବି କରିପାରୁନାହିଁ। କାରଣ ସେମାନଙ୍କ ବହୁ ଭଲ କବିତା ଆଗରୁ ଭିନ୍ନ ଭିନ୍ନ ସଂକଳନରେ ସ୍ଥାନ ପାଇସାରିଛି। ଏ ସଂକଳନରେ ସେପରି ପୁନରାବୃତ୍ତିକୁ ଯଥାସମ୍ଭବ ଉପେକ୍ଷା କରାଯାଇଛି। କବିତା ବାଛିବା ସମୟରେ ଏ କାର୍ଯ୍ୟଟି ଯେ କେତେ ଦୁରୂହ ଓ ଆୟାସସାଧ୍ୟ ତାହା ମୁଁ ଉପଲବ୍ଧି କରିଛି। କାରଣ ଯେଉଁ କବିତାକୁ ବାଛିଲେ ବି ତଥାପି ମନରେ ଅତୃପ୍ତି ରହୁଛି - କାଳେ ଏହାଠାରୁ ଭଲ କବିତାଟିଏ ଦିଆଯାଇ ପାରିଥା'ନ୍ତା। ଏ ଅସନ୍ତୋଷର ଯଥାର୍ଥ ମୁକାବିଲା

କରାଯାଇପାରିଛି ବୋଲି ମୁଁ ଆଦୌ ଦାବି କରିବି ନାହିଁ। କାରଣ ସ୍ୱୟଂ ଲେଖକମାନଙ୍କୁ ଅନୁରୋଧ କଲେବି ସେମାନେ ସେଇ ମାନସିକ ଦ୍ୱନ୍ଦ୍ୱରେ ପଡନ୍ତେ। ଗତ ପଚିଶ ବର୍ଷ ମଧ୍ୟରେ ଲେଖିଥିବା କେଉଁ କବିତାଟି ତାଙ୍କର ସର୍ବଶ୍ରେଷ୍ଠ କବିତା ତାହା ବୋଧହୁଏ ସେମାନେ ଚିହ୍ନଟ କରିପାରନ୍ତେନି। ପୁଣି ଯେଉଁ କବିତା ଗୁଡ଼ିକ ବହୁ ଆଲୋଚିତ ହୋଇଛି କିମ୍ବା କିଛି ଆଲୋଡ଼ନ ସୃଷ୍ଟି କରିଛି, ସେ କବିତା କୌଣସି ନା କୌଣସି ପାଠ୍ୟପୁସ୍ତକ ସଂକଳନରେ ସ୍ଥାନିତ ହୋଇଛି। ତେଣୁ ମୋଟାମୋଟି ଭଲ କବିତାଟିଏ ବାଛିବାକୁ ହେଉଛି- ଯଦିଓ ଭଲ କବିତାଟିର ସଂପୂର୍ଣ୍ଣ ଗ୍ରହଣୀୟ ସଂଜ୍ଞାଟିଏ ଦିଆଯାଇ ପାରିବ ନାହିଁ। ତେବେ ସୃଷ୍ଟିର ପ୍ରାଂଜଳତା, ଆବେଦନଶୀଳତା ଓ ବୋଧଗମ୍ୟତା ଉପରେ ଅଧିକ ଦୃଷ୍ଟି ଦିଆଯାଇଛି। ଅବଶ୍ୟ କବି ରମାକାନ୍ତ କହନ୍ତି ଯେ, "ସବୁ ଭଲକବିତାର ସ୍ୱର ପ୍ରାୟ ଅର୍ଦ୍ଧେକ ସ୍ୱଚ୍ଛ ଓ ଅର୍ଦ୍ଧେକ ଅସ୍ୱଚ୍ଛ- ମନ୍ତ୍ରପରି ତାହା ପ୍ରାୟ ଶୁଣାଯାଏ ନାହିଁ।" କିନ୍ତୁ ପାଠକ ପାଇଁ ତ କବି ସଂପୂର୍ଣ୍ଣ ନିରପେକ୍ଷ ହୋଇ ପାରିବନାହିଁ। ପାଠକ ପାଇଁ ସଂପୂର୍ଣ୍ଣ ନିସ୍ପୃହ ଥିଲେ କବି କଣ କହି ପାରିଥା'ନ୍ତେ-

*"ବିବେକୀ ପାଠକ କୋଟି କବି ଆୟୁ ଘେନି*
*ବଂଚିଥିଲେ କବିର କବିତ୍ୱକି ହେବ ମ୍ଳାନି ?"*

ଏ ପାଠକ ସଚେତନତା ତେବେ କାହିଁକି ? ଅବଶ୍ୟ ଭବଭୂତି ମଧ୍ୟ କହିଛନ୍ତି "ଏ ବିପୁଳପୃଥିବୀ ପଡି ରହିଛି। ମହାକାଳର ମହା ବିସ୍ତୃତି। କେବେ ଜଣେ ସମାନଧର୍ମା ହୁଏତ ଜନ୍ମନେବ ଓ ତାଙ୍କ କବିତାକୁ ଉପଲବ୍ଧି କରିବ।" ଆଜିର କବି କିନ୍ତୁ କବିତାର ଏହି ଉପଲବ୍ଧି ପାଇଁ 'ସମାନଧର୍ମା'ଙ୍କୁ ଲୋଡ଼ିବ ନାହିଁ, କିନ୍ତୁ ପାଠକୀୟ ଉଦାର ସମମର୍ମିତା ପାଇଁ ନିଶ୍ଚୟ ଅପେକ୍ଷା ରଖିବ।

ଆଗରୁ ସୂଚନା ଦେଇଛି ପ୍ରୟୋଗବାଦୀ ଓଡିଆ କବିତା ହୋଇପଡିଥିଲା ଅଧିକ ଜଟିଳ ଓ ଅବୋଧ୍ୟ। ଆମ ରାଜନୈତିକ ସ୍ୱାଧୀନତା ବୋଧହୁଏ କାବ୍ୟରଚନାରେ କିଛି ସ୍ୱୈରତା ଆଣିଥିଲା ନା ଏହା ଥିଲା କବିତା ପାଇଁ ଏକ ଐତିହାସିକ ଅନିବାର୍ଯ୍ୟତା ? ଅବଶ୍ୟ ନାନାଦି ପରୀକ୍ଷା ମଧ୍ୟରେ କବିତା ଗତିକରୁଥିଲା। କିନ୍ତୁ କାବ୍ୟଭାବନାକୁ ପ୍ରକାଶ କରିବାର ମାଧ୍ୟମ କାବ୍ୟଭାଷା ତ ଜଟିଳ ନଥିଲା ? ତେବେ ଭାବନାଟି ପ୍ରକଟିତ ହେଉନଥିଲା କାହିଁକି ? ଏହାର ଦୁଇଟି ବଡ କାରଣ ବୋଧହୁଏ ଥିଲା। ପ୍ରଥମତଃ ଅତିରିକ୍ତ ବ୍ୟକ୍ତିଗତତା (Esotericism) ଓ ଦ୍ୱିତୀୟଟି ଏଲିୟଟଙ୍କ ଭାଷାରେ ଚେତନାର ବିଚ୍ଛେଦୀକରଣ (dissociation of sensibility) । ଭାବନାଟି ଦାନା ବାନ୍ଧୁ ବାନ୍ଧୁ ବୋଧହୁଏ ଭାଂଗି ଯାଉଥିଲା। ତେଣୁ ତାକୁ ଯୋଡ଼ାଯୋଡ଼ି କଲାବେଳେ କବି କିଛି ବୌଦ୍ଧିକ କସରତର ସମ୍ମୁଖୀନ ହେଉଥିଲା। ମୋଟ ଉପରେ ଗୋଟିଏ ସମୟରେ ବୌଦ୍ଧିକତାର ଆଧିକ୍ୟ କବିତାର ସୁକୁମାର ଭାବ - ନିର୍ଯ୍ୟାସକୁ ଏତେ ବେଶୀ ଆଚ୍ଛନ୍ନ କରି ବସୁଥିଲା ଯେ ପାଠକ ପାଇଁ ସେପରି କବିତାର ସମସ୍ତ କୋଠରୀ ପ୍ରାୟ ଅବରୁଦ୍ଧ ହୋଇଯାଇଥିଲା। ପୁଣି ଦୀର୍ଘ କବିତା ରଚନାର ଯେଉଁ ମନୋବୃତ୍ତି ପ୍ରୟୋଗବାଦୀ କାଳରେ ପରିଲକ୍ଷିତ ହୋଇଥିଲା ତହିଁରେ ଭାବସାନ୍ଦ୍ରତା ବ୍ୟାହତ ହେବାକୁ ବାଧ୍ୟ। ଅବଶ୍ୟ ଗୁରୁପ୍ରସାଦ ଟି.ଏସ୍.ଏଲିୟଟଙ୍କ The waste land ର ଭାବାନୁସରଣ କରିଥିବାରୁ 'କାଳପୁରୁଷ' ନାମବାଚୀ ଦୀର୍ଘ କବିତାଟିକୁ କିଛି ମାତ୍ରାରେ

କାବ୍ୟର ଆବେଗ ଦେଇପାରିଛନ୍ତି ଓ ଯୁଦ୍ଧ ପରବର୍ତ୍ତୀ ସମାଜ-ସଂସ୍କୃତି ଓ ଅର୍ଥନୀତିର ବିପର୍ଯ୍ୟୟର ଚିତ୍ର ତହିଁରେ ପ୍ରତିଫଳିତ ହୋଇଛି। ଏଇ ପରିସ୍ଥିତି ଭିତରେ ବଂଚିଥିବା କେତୋଟି ଚରିତ୍ରକୁ ଖଂଜିଦେଇ କାଳପୁରୁଷର ବକ୍ତବ୍ୟକୁ ଅଧିକ ସ୍ପଷ୍ଟ ଓ ପରିଚ୍ଛନ୍ନ କରାଯାଇଛି। କିନ୍ତୁ ସମସାମୟିକ ବହୁ ଦୀର୍ଘ କବିତାରେ ଏପରି କାବ୍ୟିକ ଆବେଗର ସଂଧାନ ମିଳେନାହିଁ। ଏପରିକି ରମାକାନ୍ତ ତାଙ୍କ 'ଅନେକ କୋଠରୀ'ର ଦୀର୍ଘ କବିତା 'ଅନନ୍ତଶୟନ'ର କାବ୍ୟଭାବନା ବିଷୟରେ ପୃଷ୍ଠବଂଧରେ ଯେଉଁ ଦୀର୍ଘ ଭାଷ୍ୟ ରଖିଛନ୍ତି ତାହା ମଧ ଅତି ଗ୍ରହଣଶୀଳ ପାଠକ ପାଇଁ ଅବୋଧ୍ୟ ରହିଯାଏ। କବି ସଚ୍ଚିଦାନନ୍ଦଙ୍କ 'କବିତା ୧୯୬୨'ର 'ଅନ୍ତରାଳ' କବିତାଟିକୁ ନିଆଯାଉ। କବିତାଟି ଦୀର୍ଘ ନୁହେଁ କିନ୍ତୁ ଭାବନାରେ ଏତେ ସାନ୍ଦ୍ର ଯେ ତାର ନିଷ୍କର୍ଷ ପାଖରେ ପହଂଚିବା ଅତ୍ୟନ୍ତ କଠିନ ବ୍ୟାପାର ହୋଇପଡ଼େ। ଏଥିରେ ସିଂହିକା, ଇଳା ଓ ନନ୍ଦିଗ୍ରାମ ପରି ତିନୋଟି ପୌରାଣିକ ଅନୁସଂଗ ଖଂଜି ଦିଆଯାଇଛି। ପୁଣି "ସାତଟି ତାରାର ସ୍ତମ୍ଭ ପାରିହେବା ପରେ,/ ଶୂନ୍ୟ ପଟଳରେ ମୋ ଭିତରେ ମୁଇଁ ହଜେ/ ମୁଇଁ ଖୋଜେଁ/ ମୋର ଅନ୍ତରାଳେ" ପରି ରହସ୍ୟବାଦୀ ଭାବନାବି ପ୍ରଚ୍ଛନ୍ନ ରହିଛି। ପାଠକ ପାଇଁ ସମସ୍ୟାଟି ଏଇଠି। ଆଧୁନିକ କବିତାରେ ଏ ଯେଉଁ ଅନୁଷଂଗ ମାଳ ମାଳ ହୋଇ ଆସୁଛି ତା ସହିତ ପାଠକର ପରିଚୟ ଥିବା ଦରକାର। ଏ ଅନୁଷଂଗ ପୁଣି ପୁରାଣ-ଜ୍ଞାନ, ବୈଜ୍ଞାନିକ ଉଦ୍‌ଭାବନ, ରାଜନୈତିକ ପୃଷ୍ଠଭୂମି ଆଦିରୁ ସଂଗୃହୀତ ହେଉଛି। କେତେବେଳେ ବିମୂର୍ତ୍ତ ତ କେତେବେଳେ ଅମୂର୍ତ୍ତ। ତେଣୁ ଏହା ସହିତ ପାଦକୁପାଦ ମିଳେଇ ଚାଲିବା ପାଠକ ପକ୍ଷରେ ନିଶ୍ଚୟ ଦୁରୂହ ବ୍ୟାପାର। କବିତାରେ ଏସବୁ ଗୋଟିଏ ଗୋଟିଏ ଗଂଠି। ଏ ଗଂଠି ନ ଫିଟିଲାଯାଏ କବିତାର ଭାବନିର୍ଯ୍ୟାସ ପାଖରେ ପହଂଚି ହେବନାହିଁ।

ବୋଧହୁଏ କବି ସୀତାକାନ୍ତ ଏଇଥିପାଇଁ ମିଥ୍‌କୁ ତାଙ୍କ କବିତାର ଅନ୍ୟତମ ଚେତନା, କାବ୍ୟପଂଜର, ଓ କେବେବା କାବ୍ୟସ୍ଥାପତ୍ୟ ରୂପେ ଅତି ସଚେତନତାର ସହିତ ବ୍ୟାପକ ଭାବେ 'ଅଷ୍ଟପଦୀ' (୧୯୬୭) ରେ ପ୍ରୟୋଗ କଲେ। ତାଙ୍କ ପୂର୍ବରୁ ମିଥ୍ ପ୍ରୟୋଗର ସାମାନ୍ୟତମ ପ୍ରଚେଷ୍ଟା ଗୁରୁପ୍ରସାଦ, ସଚ୍ଚିଦାନନ୍ଦ, ବେଣୁଧର ଆରମ୍ଭ କରିଥିଲେ ମଧ୍ୟ ବିଭିନ୍ନ ପୁରାଣକଳ୍ପକୁ ଅବଲମ୍ବନ କରି ଆଠଟି ଦୀର୍ଘ କବିତା ଲେଖା ହୋଇନଥିଲା। ଏ କବିତାଗୁଡ଼ିକରେ ପ୍ରୟୋଗବାଦୀ କବିତାର ଆଭିମୁଖ୍ୟ ସେଇ ଅସ୍ୱସ୍ତିବୋଧ, ସମୟଚେତନା, ପାପବୋଧ, ନିଃସଂଗତାବୋଧ, ବିଚ୍ଛିନ୍ନତାବୋଧ, ମୃତ୍ୟୁଚେତନା ଆଦି ସ୍ପଷ୍ଟ ଉପଲବ୍ଧ ହେବ ଏବଂ ଏସବୁ ଯୁଦ୍ଧପରବର୍ତ୍ତୀ ଆଧୁନିକ ମଣିଷର ମର୍ମାନୁଭୂତି ମଧ୍ୟ। କିନ୍ତୁ ପୁରାଣ ଓ ପୁରାକଳ୍ପର ସାଦୃଶ୍ୟ ମଧରେ ରୂପକ, ରୂପକଳ୍ପ ଓ ପ୍ରତୀକ ମାଧ୍ୟମରେ ଆଧୁନିକ ମଣିଷ ଜୀବନର ଅନ୍ତର୍ଦାହକୁ ଖୁବ୍ ଶକ୍ତିଶାଳୀ ଭାବ- ଆବେଦନକ୍ଷମ ଭାଷାରେ ଏହି କବିତାଗୁଡ଼ିକରେ ପରିବେଷଣ କରାଯାଇଅଛି। କବି ଗୁରୁପ୍ରସାଦ ଓ ସଚ୍ଚିଦାନନ୍ଦ କବିତାର ଭାଷାରେ ଯେଉଁ ବ୍ୟଂଜନା ଓ ଶାଣିତ ଶ୍ଲେଷ ଆଣିଥିଲେ ସୀତାକାନ୍ତଙ୍କ ଭାଷାରେ ତାହା ନଥିଲେ ବି ଗ୍ରାମ୍ୟ ଜୀବନ ଓ ତାର ସୀମା ସରହଦରୁ ଶବ୍ଦ ସାଉଁଟି ଓ ହଜି ଯାଉଥିବା ବହୁ ଅପ୍ରଚଳିତ ଶବ୍ଦକୁ ପୁଣିଥରେ କାବ୍ୟରାଜ୍ୟରେ ପ୍ରତିଷ୍ଠା ଦେଇ ସେ ଓଡିଆ ଭାଷାର ଶକ୍ତିକୁ ନୂଆଭାବରେ ସଂଧାନ କରିଛନ୍ତି। ଶବ୍ଦପ୍ରୟୋଗ କ୍ଷେତ୍ରରେ ସଚ୍ଚିବାବୁ ଯାଦୁକରୀ

ରୋମାଣ୍ଟିକ କାବ୍ୟାନୁଷଂଗ ପ୍ରକାଶ କଲାବେଳେ ରମାକାନ୍ତଙ୍କ କାବ୍ୟଭାଷା ଖୁବ୍ ଦୀର୍ଘଜ ଓ ଗଦ୍ୟାୟିତ ଭଂଗୀରେ ଜୀବନ ସହିତ ଅଧିକ ସାମଂଜସ୍ୟ ରକ୍ଷାକରୁଥିଲା। ଉଦାହରଣ ସ୍ୱରୂପ ସଚ୍ଚିବାବୁଙ୍କ କାବ୍ୟଭାଷାର 'ନଷ୍ଟପକ୍ଷ ହେ ମୂକ ମୈନାକ', 'ଧୂସର ଶତାବ୍ଦୀର ଯବନିକା', 'ଚର୍ବିପରି ସ୍ନିଗ୍ଧ ନିଦ', 'କଂଚା ଦେହର ତନିମା', 'ଖାକୀର ହସ', 'ଶବରୀ ଆଖି' କିମ୍ୱା ବିନୋଦ ନାୟକଙ୍କ 'ପ୍ରଭାତର ସ୍ୱାସ୍ଥ୍ୟବତୀ ଲଳିତ ଆଲୋକ', 'କୋକିଶିଆଳୀର ରୋମ ମସୃଣ ଶଯ୍ୟା', 'ବିବର୍ଣ୍ଣ ନକ୍ଷତ୍ର ତୁଠ', 'ଚଇତର ବିମନା ନୂପୁର' ଆଦି ସମାସ-ପଦ ଓ ଶବ୍ଦପୁଞ୍ଜ ସାଂପ୍ରତିକ କବିତାରେ ପ୍ରାୟ ପ୍ରତ୍ୟାଖ୍ୟାତ ହୋଇଅଛି। ଏହା ପରିବର୍ତ୍ତେ ଶବ୍ଦସଜ୍ଜା ହୋଇଛି ଅଧିକ ଶାଣିତ, ଲଳିତ, ରୁଚିସଂପନ୍ନ ଓ ଶାଳୀନ। ଶବ୍ଦର ବ୍ୟଂଜନା ଓ ନିହିତାର୍ଥ ପ୍ରତି ସାଂପ୍ରତିକ କବି ଖୁବ୍ ସଚେତନ ଥିବା ଲକ୍ଷ୍ୟ କରାଯିବ। ପୁନଶ୍ଚ ସାଂପ୍ରତିକ କବିତାରେ ଗଦ୍ୟର ପରିଚ୍ଛନ୍ନ ପ୍ରକାଶଭଙ୍ଗୀ ଓ କବିତାର ଆବେଗସଂଚାରୀ ବାକ୍ରୀତି ଉଭୟର ସଂଯୋଗ ଘଟିଛି। କବିତା ବାହ୍ୟଛଂଦକୁ ଉପେକ୍ଷା କରି ଅନ୍ତର୍ଛନ୍ଦ ଉପରେ ଅଧିକ ଆସ୍ଥା ରଖିଛି। ଉଦାହରଣ ସ୍ୱରୂପ ସଂକଳନସ୍ଥ କବିତା 'ଭାଂଗିପଡୁଥିବା ଦୁର୍ଗ'ର କାବ୍ୟଭାଷାକୁ ଲକ୍ଷ୍ୟ କରନ୍ତୁ- ''ଭାଂଗିପଡୁଥିବା ଦୁର୍ଗର ଚାରିକାନ୍ଥ ଭିତରେ... ସାନ୍ତ୍ୱନା ଦେବା।'' (ଜଗନ୍ନାଥ ପ୍ରସାଦ ଦାସ) ରୂପକଳ୍ପ, ପ୍ରତୀକ, ଲୋକ-ଉପାଦାନ (folk-element) ଓ ମିଥ୍କୁ କବିତା କଳାର କାରୁକାର୍ଯ୍ୟ ବା ସ୍ଥାପତ୍ୟଭାବରେ ସାଂପ୍ରତିକ କାଳର କବିମାନେ ଅଧିକରୁ ଅଧିକ ପ୍ରୟୋଗ କରୁଛନ୍ତି। ଏପରି ପ୍ରତୀକ ଓ ରୂପକଳ୍ପ ଜୀବନର ପ୍ରାତ୍ୟହିକ ଅନୁଭୂତି ଓ ପରିପାର୍ଶ୍ୱ ମଧ୍ୟରୁ ସଂଗୃହୀତ ହୋଇ କବିତାର ବୌଦ୍ଧିକ ଓ କଳାଗତ ଉଚ୍ଚତା ରକ୍ଷା କରୁଛି।

ସେହିପରି ପ୍ରତୀକ ପ୍ରୟୋଗରେ ସାଂପ୍ରତିକ କବିତାର ସାଫଲ୍ୟ ଯେ ଖୁବ୍ ବେଶୀ ଏବଂ ଏପରି ପ୍ରତୀକ ଜୀବନର ନିକଟବର୍ତ୍ତୀ ଅନ୍ତରଂଗ ଅନୁଭୂତି ମଧ୍ୟରୁ ସଂଗୃହୀତ, ତେଣୁ ଏକାନ୍ତ ଆଟୋପହୀନ ଓ ସ୍ୱାଭାବିକ, ଏହା ନିମ୍ନୋକ୍ତ ଉଦାହରଣ ଗୁଡ଼ିକରୁ ସ୍ପଷ୍ଟ ହେବ। କବି ରଘୁନାଥ ଦାସ (ଜଟାୟୁ) ଙ୍କ କବିତାରେ ଝିଣ୍ଟିକା ଓ ରାଜବଣି ପ୍ରତୀକ ଦୁଇଟି ଯଥାକ୍ରମେ ଶୋଷିତ ଜନତା ଓ ଶୋଷକ ପୁଂଜିପତିମାନଙ୍କ ଉଦ୍ଦେଶ୍ୟରେ ଅଭିପ୍ରେତ। ସେହିପରି 'ଖଜୁରିଗଛ' ଓ 'ରବରଗଛ' ଶୋଷଣପିଷ୍ଟ ଜନତାର ପ୍ରତୀକତା କରେ।

*ଆମେ କି ରବରଗଛ/ ଆମ ଛାଟି ନିଗିଡ଼ା ରସରେ*
*ରଂଧାଯିବ କଂପାନୀର ରକ୍ତଲାଲ ବହଳିଆ ଲାଭ ?*

*('ଗଣପତି', ରଘୁନାଥ ଦାସ)*

ପୌରାଣିକ ଚରିତ୍ରଗୁଡ଼ିକ ମଧ୍ୟ ତାଙ୍କ କବିତାରେ ଆଧୁନିକ ସମାଜ ଜୀବନର ତତ୍ସମ ପ୍ରତୀକଭାବେ ଗୃହୀତ ହୋଇଛନ୍ତି। ତେଣୁ ଶକୁନି, ବ୍ୟାଧ, ଦୁଃଶାସନ, ଦ୍ରୌପଦୀ ଆଦି ନୂତନ ପ୍ରତୀକାର୍ଥ ନେଇ ତାଙ୍କ କବିତାର ଶକ୍ତି ଓ ସାମର୍ଥ୍ୟକୁ ଚିହ୍ନାଇ ଦେଉଛନ୍ତି। କବି ଗୁରୁପ୍ରସାଦ କବିତାରେ ଶିମିଳିକଣ୍ଟା, ଥୁଣ୍ଟାଗଛ, ଅପନ୍ତରା, ମରୁଭୂମି, ବାଲିବନ୍ତ, ଶୀତ, କୁହୁଡ଼ି ଆଦି ଦୃଶ୍ୟମାନ ଚିତ୍ରକଳ୍ପକୁ ବାରମ୍ୱାର ହତାଶା, ମୂଲ୍ୟବୋଧର ବିପର୍ଯ୍ୟୟ, ଜୀବନର ବଂଧ୍ୟାତ୍ୱ (barrenness), ମଣିଷର ରୁଗ୍ଣମନଦଳ ସ୍ଥିତି ଅର୍ଥରେ ପ୍ରୟୋଗ କରିଛନ୍ତି। ସେହି ମର୍ମରେ ଛିଣ୍ଡାଚିଠି, କାଦୁଅ, କୁଆ, ବାଦୁଡ଼ି, ହ୍ୟାଣ୍ଡବିଲ ଆଦି ଶବ୍ଦଗୁଡ଼ିକ ଜୀବନର

ବ୍ୟର୍ଥତା, ନିଃସଂଗତା ଓ ବିଚ୍ଛିନ୍ନତାବୋଧର ପ୍ରତୀକ ଭାବେ ତାଙ୍କ କବିତାରେ ବାରମ୍ବାର ଆରୋପିତ ହୋଇଛନ୍ତି। ରମାକାନ୍ତଙ୍କ କବିତାରେ ଲଣ୍ଡନ, ଚିଲ, ଶାଗୁଣା, ବିମାନବନ୍ଦର, ବ୍ୟୋମଯାନ, ପକ୍ଷୀ, ଛୁରୀ, ନଈ, ସମୁଦ୍ର, ଢେଉ ବିଭିନ୍ନ ପରିପ୍ରେକ୍ଷୀରେ ଚମତ୍କାର ପ୍ରତୀକାର୍ଥ ନେଇ ଆତ୍ମ ପ୍ରକାଶ କରିଛନ୍ତି। କିନ୍ତୁ ତାଙ୍କ କବିତାରେ ଶାଗୁଣା, ରେଳଗାଡ଼ି, କଳାଟ୍ୟାକ୍ସି ଡ୍ରାଇଭର, ମଧ୍ୟବୟସ୍କା ମୋଟୀ କାଳୀବେଶ୍ୟା, ଅଂଧାର ଜଂଗଲ ଓ ସମୁଦ୍ର ପ୍ରସଂଗତଃ ମୃତ୍ୟୁର ପ୍ରତୀକତା କରନ୍ତି ଏବଂ ଏପରି ପରିକଳ୍ପନାରେ କିଛି ଅନନ୍ୟତା ପ୍ରକାଶ ପାଏ। କବି ସୀତାକାନ୍ତଙ୍କ ପ୍ରତୀକମାନେ ପ୍ରାତ୍ୟହିତ ଜୀବନ ଚର୍ଯ୍ୟାରୁ ସଂଗୃହୀତ ହୋଇଥିଲେ ବି metaphysical କବିତାର conceit ସହିତ ସାମ୍ୟ ରକ୍ଷା କରନ୍ତି। ଏରୋଡ୍ରମ, ଘର, କୋଠରୀ, ବୁଢ଼ାଶିକାରୀ, ଗାଈଁଲି କମାର, କଇଁଚ, ମଲାଓଟ, ମରୁଭୂମି, ନଈଆଦି ଶରୀର, ମୃତ୍ୟୁ, ମହାକାଳ, ଭାଗ୍ୟ, ଅସହାୟତା, ସମୟଆଦି ବହୁ ଅମୂର୍ତ୍ତ ଚେତନାର ପ୍ରତୀକତା କରନ୍ତି। ତାଙ୍କ କବିତାରେ ପ୍ରଜାପତି ସୌନ୍ଦର୍ଯ୍ୟର, ଘାସଫୁଲ ନିରୀହତାର ଓ ବଗିଚା ବାର୍ଦ୍ଧକ୍ୟର ପ୍ରତୀକତା କରୁଥିବାବେଳେ ସମୁଦ୍ର ଶବ୍ଦକୁ ସେ ଜୀବନ, ମୃତ୍ୟୁ, ମୁକ୍ତି ଆଦି ବିଭିନ୍ନ ପ୍ରତୀକ ଅର୍ଥରେ ପ୍ରୟୋଗ କରିଛନ୍ତି। କବି ଦୀପକ ମିଶ୍ରଙ୍କ କବିତାରେ ବିଧବା, ଖରା, ବିମାନ, ଶବ, ପଦ୍ମ, ତାରା ବାରମ୍ବାର ପ୍ରତୀକ ଅର୍ଥରେ ପ୍ରକାଶ ପାଇଛନ୍ତି। ମୃତ୍ୟୁକୁ 'ଅରଣାମଇଁଷି' ଭାବେ ଓ ମୃତ୍ୟୁ ପରବର୍ତ୍ତୀ ଜଗତକୁ 'ସପ୍ତମପୃଥିବୀ' ଭାବେ ପରିକଳ୍ପନା କରିବାରେ ତାଙ୍କ ଅତିଭୌତିକ ଦୃଷ୍ଟିଭଂଗୀ ବାରିହୋଇଯାଏ। ସେହିପରି କବି ପ୍ରତିଭା ଶତପଥୀ ମୃତ୍ୟୁର ପ୍ରତୀକାର୍ଥରେ ସବାସାନପୁଅ, ଦୁର୍ଦ୍ଦାନ୍ତ ପ୍ରେମିକ ଦୁଇଟି ଶବ୍ଦପୁଂଜକୁ ଅନନ୍ୟ କୁଶଳତାର ସହିତ ପ୍ରୟୋଗ କରନ୍ତି। ତାଙ୍କ କବିତାରେ ଲୋକଚେତନାର ସାହାଡ଼ା ସୁନ୍ଦରୀ ମଣିଷର ସୁନ୍ଦର ଅନ୍ତରାତ୍ମାର ପ୍ରତୀକତା କରୁଥିବାବେଳେ ଲାଂଗୁଳାପୋକ ନାରଖାର ହେଉଥିବା ମଣିଷର ବିପନ୍ନ ଭାଗ୍ୟର ପ୍ରତୀକତା କରେ। ସେହିପରି ତାଙ୍କ 'ଗୋଠଜଗୁଆଳ' କବିତାରେ ପାଂଚଣ ଓ ବଇଁଶୀ ଜାଗତିକ ଓ ଅତିଜାଗତିକ ସତ୍ତାର ପ୍ରତିନିଧିତ୍ୱ କରନ୍ତି। ଝିଟିପିଟି, ମାଂକଡସା, ସାପ, ମହୁମାଛି ମଣିଷ ଜୀବନର ବିଭିନ୍ନ ସ୍ଥିତି ଓ ଅସହାୟତାର ପ୍ରତୀକତା କରନ୍ତି କବି ସୌଭାଗ୍ୟ ମିଶ୍ରଙ୍କ କବିତାରେ। 'ଅଂଧମହୁମାଛି' ଏହି ଦୃଷ୍ଟିରୁ ଏକ ସଫଳ ପ୍ରତୀକବାଦୀ କବିତା। ରାଜେନ୍ଦ୍ରଙ୍କ କବିତାରେ ମାଟି, ଭାତ, ମଇଁଷି, ବିଦୂଷକ, ଉଦ୍ୟାନ, ଶିଶି ଆଦି ଶବ୍ଦ ବିଭିନ୍ନ ପ୍ରତୀକାର୍ଥରେ ପ୍ରୟୋଗ କୁଶଳତା ଲାଭକରିଛନ୍ତି। ମୋଟ ଉପରେ ସାଂପ୍ରତିକ କବିତାରେ ପ୍ରତୀକନିର୍ମାଣ ଭୂମିଟି ଯେ ଖୁବ୍ ଅର୍ଥବାହୀ ଓ ଆନୁପାତିକ ହୋଇପାରିଛି, ତାହା ବେଳେବେଳେ କାବ୍ୟଗ୍ରନ୍ଥ ଗୁଡ଼ିକର ନାମକରଣରୁ ହିଁ ସ୍ପଷ୍ଟ ହେବ।

ଆଗରୁ ସୂଚନା ଦିଆଯାଇଚି ଯେ ଉତ୍ତର ଷାଠିଏରେ କବି ସୀତାକାନ୍ତ ମହାପାତ୍ର ମିଥ୍‌କୁ କାବ୍ୟର ଜୀବନ ଓ ଆତ୍ମା ଭାବେ ପ୍ରୟୋଗ କରି ଅନେକ ପରିମାଣରେ କବିତାକୁ ସୁବୋଧ୍ୟ କରିଦେଇଥିଲେ। କିନ୍ତୁ ୧୯୬୭ ପରେ ଓଡ଼ିଆ କବିତାରେ ମିଥ୍ କେତେବେଳେ କବିତାର କେନ୍ଦ୍ର- ବିଷୟଭାବେ, କେତେବେଳେ ବା କବିତାର ଶିଳ୍ପବିଧି ଭାବେ ବହୁ ବିଭିନ୍ନ ଦୃଷ୍ଟିକୋଣରୁ ନିୟୋଜିତ ହୋଇଆସିଛି। ଏଠାରେ ମିଥ୍ କେତେବେଳେ ଉପମାନ ଭାବେ, କେତେବେଳେ ରୂପକଭାବେ, କେତେବେଳେ ରୂପକଳ୍ପ ବା ପ୍ରତୀକଭାବେ ଆଧୁନିକ କବିତାରେ ଚମତ୍କାର ପ୍ରୟୋଗ କୁଶଳତା ଲାଭକରିଛି। ଉଦାହରଣ ସ୍ୱରୂପ ସୀତାକାନ୍ତ ଯେତେବେଳେ ତାଙ୍କ 'ପରକୀୟା' କବିତାରେ ଲେଖିଛନ୍ତି-

*"ଶ୍ୟାମଂକର ଶ୍ୟାମଳ ଆଙ୍ଗୁଠି ସବୁ ଛ . ପାଏ*
*ନବୀନ ନୀରଦ ସମ ମୋ ଦେହର ନୀଳ ଆକାଶରେ"*

କିମ୍ବା କମଳାକାନ୍ତଙ୍କ 'କଳାକାହ୍ନୁ' କବିତାରେ

*"ରେ କଳାକାହ୍ନୁ, କି କିମିଆଁ, କି ଭୋଜବାଜି*
*ଯନ୍ତ୍ରରେ ଯନ୍ତି ଦେଇଚୁ ଜାଣେନା ବୁଝେନା ତୋ ଖୁନ୍ଦଭଜା ଗଣ୍ଡିଳିର ବଂଧୁତ୍ୱ*
*ଅଣାୟତ୍ତ ଜୁହୁଡିର ପର୍ବତକୁ ଚାପିଧରିଥିବା ପାଦର ଔଚିତ୍ୟ*
*ହେ ସିଆଳି ଲତାର ଛଟପଟ କାଲୁଆ ମଣିଷ।..."*

ଏହି ଦୁଇଟି ଉଦାହରଣରୁ ସ୍ପଷ୍ଟ ହେବ ଯେ କାବ୍ୟର ଶିଳ୍ପବିଧି ଓ କବିତାର ଭାବବସ୍ତୁଭାବେ ମିଥ୍ କେତେ ଅପରିହାର୍ଯ୍ୟ ଭାବେ ଆଜି ପ୍ରୟୋଜନୀୟ ହୋଇପଡ଼ିଛି। କେହି କେହି ପୁରାଣର ବିଷୟ ଓ ଚରିତ୍ରକୁ ନୂତନଭାବେ ଅନୁସଂଧାନ କଲାବେଳେ କେହି କବି ମିଥ୍ ସହିତ ଆଧୁନିକ ଜୀବନର ଏକ ସମାନ୍ତରାଳ ଚିତ୍ର ବା ଆନାଲଜି ଆଂକିବାରେ ଖୁବ୍ ଦକ୍ଷତା ପ୍ରକାଶ କରିଛନ୍ତି। କବି ସୌଭାଗ୍ୟ ମିଶ୍ରଙ୍କ କବିତା 'ଅହଲ୍ୟା' ଓ 'ଶକୁନ୍ତଳା' ନୂଆଭାବରେ ଏ ଚରିତ୍ର ଦୁଇଟିକୁ ଆବିଷ୍କାର କରିଥିଲାବେଳେ ରମାକାନ୍ତଙ୍କ 'ଶ୍ରୀରାଧା', ପ୍ରତିଭାଙ୍କ 'ଶବରୀ', ଶରତ ଚନ୍ଦ୍ର ପ୍ରଧାନଙ୍କ 'ଯଯାତି' କିମ୍ବା ଫନୀ ମହାନ୍ତିଙ୍କ 'ବିଷାଦଯୋଗ' ସଂପୂର୍ଣ୍ଣ ରୂପେ ମିଥ୍‌କୁ କାବ୍ୟପଂଜର ଓ କାବ୍ୟ ପ୍ରକରଣ ଭାବେ ଗ୍ରହଣ କରି ସାଂପ୍ରତିକ ମଣିଷର ଅସହାୟତା, ଅଚରିତାର୍ଥତା ଓ ଅକୁଳାନପଣିଆକୁ ଅତି ପ୍ରାସଂଗିକଭାବେ ଚିହ୍ନେଇ ଦେଇପାରିଛି।

ପ୍ରୟୋଗବାଦୀ କାଳରେ କବି ସଚ୍ଚିଦାନନ୍ଦ, ଗୁରୁପ୍ରସାଦ, ବେଣୁଧର ଓ ସୀତାକାନ୍ତ ମିଥ୍‌କୁ ବହୁ ଭାବରେ କବିତାରେ ପରୀକ୍ଷା କରିନେଇଥିବା କଥା ଆଗରୁ ସୂଚିତ ହୋଇଛି। କିନ୍ତୁ ସାଂପ୍ରତିକ ଓଡ଼ିଆ କବିତାରେ ମିଥ୍ ଭାବଚେତନାର ଏକ ବିପୁଳ ବୋଧିଦ୍ରୁମରେ ପରିଣତ ହୋଇଯାଇଛି ଓ ନାନାଆଡ଼କୁ ତା'ର ଶାଖା ପ୍ରଶାଖା ମେଲାଇ ବସିଛି। ସୀତାକାନ୍ତଙ୍କ 'ଆରଦୃଶ୍ୟ'ରେ 'ପରୀକ୍ଷିତ ଉବାଚ', 'ଆରଦୃଶ୍ୟ', 'ସମୁଦ୍ର' କାବ୍ୟଗ୍ରନ୍ଥରେ 'ସୂର୍ଯ୍ୟପୂଜା', 'ଶବ୍ଦର ଆକାଶ'ରେ 'କୁରୁକ୍ଷେତ୍ର', ଦୀପକ ମିଶ୍ରଙ୍କ 'କପଟ ସୂର୍ଯ୍ୟାସ୍ତ' କାବ୍ୟଗ୍ରନ୍ଥର 'ଆଖିରୁ ଆଖିକୁ ନାଚେ ମୃତ୍ୟୁ', 'ଚନ୍ଦ୍ରଶେଣାର ସୁଖ', 'ଶିଶୁପାଳ', 'ବେତାଳ ବୋଇଲା' ଆଦି କବିତାରେ ମିଥ୍ ପ୍ରୟୋଗର ବୌଦ୍ଧିକତା ଓ ମାନସିକତାକୁ ଲକ୍ଷ୍ୟ କରାଯାଇପାରେ। ରାଜେନ୍ଦ୍ର ପଣ୍ଡାଙ୍କ କବିତାରେ ମିଥ୍ ପ୍ରୟୋଗର ଧାରାଟି କିନ୍ତୁ ଭିନ୍ନ ଓ ଅଭିନବ। ମଣିଷ ଜୀବନର ଭୀତି ଓ ସଂଶୟବୋଧକୁ ସେ 'ବାମନ' ମିଥ୍ ମଧ୍ୟରେ କେତେ କଳାପୂର୍ଣ୍ଣଭାବେ ପ୍ରୟୋଗ କରିଛନ୍ତି ନିମ୍ନୋକ୍ତ ଉଦ୍ଧୃତିରୁ ତାହା ସ୍ପଷ୍ଟ ହେବ :

*"ବାଙ୍କରା ବୁଢ଼ା ଲୋକର ନାଭିକୁ ମୋର ଡର*
*କେତେବେଳେ ବାହାରିପାରେ ପଦ୍ମର ନାଡ଼ଚ*
*ଆଉ କେତେବେଳେ ତୃତୀୟ ଗୋଡ଼ ।" (ଗୌଣ ଦେବତା)*

ଏହି ମର୍ମରେ ମିଥ୍‌କୁ ଅବଲମ୍ବନ କରି ମଣିଷର ଅସହାୟ ବ୍ୟକ୍ତିସତ୍ତାର ଏକ ବସ୍ତୁନିଷ୍ଠ ଭାବମୟ ରୂପଦେବାରେ ଓଡ଼ିଆ କବିମାନେ ଆଗଭର ହୋଇଛନ୍ତି। କବି କୈଳାସ ଲେଙ୍କାଙ୍କ ଶକୁନି ଯେପରି ଚିରନ୍ତନ ଏକ ଟ୍ରାଜିକ୍ ମୂଲ୍ୟବୋଧର ଶବ୍ଦମୟ ରୂପ। ଶକୁନି ଯେପରି ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ଏକ ତ୍ରୈକାଳିକ ସତ୍ତା ଯାହା ଅତୀତରେ ଥିଲା,

ଆଜି ଅଛି ଓ ଭବିଷ୍ୟତରେ ବାରମ୍ବାର ଜନ୍ମନେବ ମଧ୍ୟ। ଏଠି ଶକୁନି ବ୍ୟକ୍ତିବିଶେଷ ନୁହେଁ, ବରଂ ମଣିଷର କ୍ରୋଧ, ପ୍ରତିଶୋଧପରାୟଣତା ଓ ଅସହାୟତାର ଏକ ଚିରନ୍ତନ ସତ୍ତା। ଏହି ସଙ୍କଳନରେ ସୌଭାଗ୍ୟ ମିଶ୍ରଙ୍କ 'କୈବର୍ତ୍ତ', ଦୀପକ ମିଶ୍ରଙ୍କ 'ଆଖିରୁ ଆଖିକୁ ନାଚେ ମୃତ୍ୟୁ', ମନୋଜ ଦାସଙ୍କ 'ଭାରତବର୍ଷ ୧୯୯୦', ଦୁର୍ଗାଚରଣ ପରିଡ଼ାଙ୍କ 'ଦେବୀ', ସରୋଜ ରଂଜନ ମହାନ୍ତିଙ୍କ 'କଳାହାଣ୍ଡି', ମନୋରମା ମହାପାତ୍ରଙ୍କ 'ଆତ୍ମନିବେଦିତା' ଆଦି କବିତାରେ ମୁଖ୍ୟତଃ ମିଥ୍‌କୁ ଅନୁଷଙ୍ଗଭାବେ ଗ୍ରହଣ କରାଯାଇଛି ଓ ତା'ଦ୍ୱାରା କବିତାର ଭାବ ସଂପ୍ରସାରଣକ୍ଷମ ତଥା ଆବେଦନଶୀଳ ହୋଇ ଉଠିଛି।

ମିଥ୍ ପରି ସାଂପ୍ରତିକ ଓଡ଼ିଆ କବିତା ଅଧିକରୁ ଅ଼ଧିକ ଲୋକ ଉପାଦାନ ଉପରେ ମଧ୍ୟ ନିର୍ଭରଶୀଳ। ଠିକ୍ ମିଥ୍‌ପରି ଲୋକ ଉପାଦାନ ମଧ୍ୟ ସାଂପ୍ରତିକ କବିତାରେ ଅନୁଷଙ୍ଗ, ଭାବକେନ୍ଦ୍ର ଓ କାବ୍ୟ-ସ୍ଥାପତ୍ୟ ଭାବେ ନିୟୋଜିତ ହୋଇଥିବା ଲକ୍ଷ୍ୟ କରାଯିବ। ଏପରି ଉଦାହରଣ ପର୍ଯ୍ୟାପ୍ତ ହେଲେବି ଏଠାରେ କେତୋଟି ମାତ୍ର କବିତାରୁ ଉଦ୍ଧୃତି ଦିଆଯାଇଛି ପ୍ରସଙ୍ଗଟିକୁ କେବଳ ପ୍ରାଞ୍ଜଳ କରିବାପାଇଁ। ପୁନଶ୍ଚ ଏଠାରେ କହିବାରେ ଦ୍ୱିଧା ନାହିଁ ଯେ ଆଧୁନିକ କବିତାର ସେଇ ଅଗ୍ରଜ କବି ସଚ୍ଚିଦାନନ୍ଦ, ଗୁରୁପ୍ରସାଦ, ବେଣୁଧର ଓ ରମାକାନ୍ତ ପ୍ରୟୋଗବାଦୀ କାବ୍ୟଧାରାରେ ଲୋକ ଉପାଦାନକୁ ସାମିଲ୍‌କରି ଓଡ଼ିଆ କବିତାର ଶକ୍ତି ଓ ସାମର୍ଥ୍ୟକୁ ନୂତନଭାବେ ପରୀକ୍ଷା କରିଥିଲେ। ଏପରି ପରୀକ୍ଷାଦ୍ୱାରା ନଂଦକିଶୋର -ଗୋଦାବରୀଶ- ସଚ୍ଚିଦାନଂଦଙ୍କ କାବ୍ୟଧାରା ସହିତ କେବଳ ଯୋଗସୂତ୍ର ସ୍ଥାପିତ ହୋଇନାହିଁ, କବିତାର ଦୁର୍ବୋଧ୍ୟତା ସହିତ ମଧ୍ୟ ମୁକାବିଲା କରାଯାଇପାରିଛି। ସଚ୍ଚିଦାନଂଦଂଙ୍କ ମାଲ୍ୟାଣି କିମ୍ବା ଅର୍କ୍ଷିତ ଭଂଡାରି (ଅବୋଲକରା ଉପାଖ୍ୟାନ), ଗୁରୁପ୍ରସାଦଂଙ୍କ ଚଂପାଫୁଲ, ବେଣୁଧରଂଙ୍କ କଳାମେଣ୍ଢା, ଯୋଗୀ, କେଶବତୀ ଆଦି ରୂପକଥାଭିତ୍ତିକ ଉପାଦାନଗୁଡ଼ିକ ଆମ ଆଧୁନିକ କବିତାକୁ ଚମତ୍କାର ଜାଂଗଳିକ ସୁଷମା ଦେଇଥିଲା। ରମାକାନ୍ତ ଲୋକକଥାର ଏହି ଉପାଦାନକୁ ତାଂକ 'ଅବୋଲକରା' ଓ 'ବିମାନଦୁର୍ଘଟଣାରେ ମୃତ୍ୟୁ' କବିତା ଦୁଇଟିରେ ଓଡିଆ କବିତାର ପ୍ରୟୋଗବାଦୀ କାଳରେ ଉଭୟ କାବ୍ୟବିଷୟ ଓ କାବ୍ୟସ୍ଥାପତ୍ୟ ରୂପେ ବିଶେଷ କଳାତ୍ମକଭାବେ ପ୍ରୟୋଗ କରିଥିଲେ। ଉଦାହରଣସ୍ୱରୂପ ବିମାନ ଦୁର୍ଘଟଣାରେ ମୃତ୍ୟୁ କବିତାର ପଙ୍‌କ୍ତିଗୁଡ଼ିକୁ ଲକ୍ଷ୍ୟ କରନ୍ତୁ:-

*''କଂଚନଗଡ଼ର ତଳେ ପ୍ରବାହିତ ରକ୍ତନଦୀ, ଦେଖ*
*ନିଃଶବ୍ଦେ ଜୀବନସ୍ରୋତ ଧାଉଁଛି କିପରି*
*ଦେବାକି ନଦେବା ଫୁଲ ରଜାଙ୍କର ମାଳି ଆସିଅଛି*
*ରଜା ନିଜେ ମାଗୁଛନ୍ତି ? ପାଦଶବ୍ଦ ଶୁଭିଲାଣି*
*ଦୂର କାନ୍ଦଣା ସାଙ୍ଗରେ ଶୁଭେ ହ୍ରେଷାରବ*
*କାଲିଯାଅ ଯୋଗୀ ହୋଇକରି*
*କୁମରମଣିରେ ମୋର, ବାଣିଜ୍ୟ ବା ରାଜକର୍ମ କର।''*

କବି ରାଜେନ୍ଦ୍ର କିଶୋର ପଣ୍ଡା ସାମ୍ପ୍ରତିକ କାଳଖଣ୍ଡରେ ତାଙ୍କ 'ଝିଅ ପାଇଁ ଗୋଟିଏ କବିତା'ରେ ଲୋକ ଉପାଦାନର ଚମତ୍କାର ଉପଯୋଗ କରିଛନ୍ତି। ଉଦାହରଣଟିଏ ଦେଖନ୍ତୁ:

*''କେତେ ସରାଗରେ ପରଶିଥିବା ସୁଆଦିଆ ଚିଅଣକୁ*
*ଥୁ ଥୁ କରିଦେଲେ ପ୍ରିୟଜନଟିଏ*

*କୋହ ଚାପି ସ୍ମିତ ଖେଳାଇବୁ,*
*ଅମୃତ ବ୍ୟଞ୍ଜନ ତୋର ବିଷ ହେବନାହିଁ ଝିଅ,*
*ଅମୃତ ତ କେବେ ଅଇଁଠା ହୁଏନାହିଁ ଝିଅ,*
*ଯୋଗ୍ୟମେ ଦେଖି ସମର୍ପିବୁ,*
*କାହାଣୀର ବୁଢ଼ୀ ଅସୁରୁଣୀ*
*ଗୋଟିଏ ଗୋଡ଼କୁ ତା'ର ଚୁଲିରେ ପୂରାଇ ଜାଳି*
*ଆରଟି ସେକିଲାପରି ତୁ'ବି ବଞ୍ଚିବୁ।''*

ପ୍ରତିଭା ଶତପଥୀଙ୍କ 'ସାହାଡାସୁନ୍ଦରୀ' କାବ୍ୟସଙ୍କଳନର ଶୀର୍ଷକ କବିତା 'ସାହାଡା ସୁନ୍ଦରୀ' ଏହିପରି ଲୋକ ଉପାଦାନ ଉପରେ ଭିତ୍ତିଶୀଳ। ସମଗ୍ର କବିତାଟିର କେନ୍ଦ୍ରବିନ୍ଦୁ ହିଁ ସାହାଡା ସୁନ୍ଦରୀ—ଯେଉଁ ଲୋକ ଚରିତ୍ର ସହିତ କବି ଆଧୁନିକ ଜୀବନଯନ୍ତ୍ରଣାପିଷ୍ଟ ଯେକୌଣସି ନାରୀର ଐହିକ ସ୍ଥିତିର ଏକ ସମାନ୍ତରାଳ ଉପଲବ୍ଧି ପ୍ରକାଶ କରିଛନ୍ତି। ସାହାଡା ଗଛର କୃଶ ଅସୁନ୍ଦର ଗଣ୍ଡି ଭିତରେ ଥିବା ସୁନ୍ଦରୀ ନାରୀଟି ହିଁ କବିର ଆତ୍ମ—ଅଭିଭୂତି (Persona).

*''ମୁଁ ସିନା ଖରାରେ ପୋଡ଼େ, ବର୍ଷା ଖାଏ, ଶୀତ ସହେ,*
*ସାହାଡାଗଛର ଅପରିଚ୍ଛନ୍ନ ଗଣ୍ଡି ଭିତରେ ଲୁଚିଥିବା ହେ ସୁନ୍ଦରୀ*
*ତୋ'ର ଅସ୍ଥିରତାରେ ମୋତେ ଦୋହଲେଇ ଦେ'ନା*
*କେତେ ପାର୍ବଣର ମୁଖର ତିଥି*
*ମୋର ଅବସନ୍ନ ବିଷଣ୍ଣତା ତଳେ ହଜିଯାଇଛି*
*ତୁ କେମିତି ବୁଝିପାରୁନୁ ଯେ,*
*ଆମ ପାଇଁ ଆଉ ଅଧିକ କିଛି ନାହିଁ।''      (ସାହାଡା ସୁନ୍ଦରୀ)*

ସେହିପରି ସୌରୀନ୍ଦ୍ର ବାରିକଙ୍କ କବିତାରେ ଲୋକ-ଉପାଦାନଟି ଆରୋପିତ ହୋଇଛି ଜଣେ ନାରୀଠାରେ—ଯାହା ସହିତ ପ୍ରାତ୍ୟହିକ ଜୀବନରେ ସବୁଦିନେ ଦେଖାସାକ୍ଷାତ, ଆଳାପ, ପ୍ରେମ ଓ ରାଗରୋଷ ମଧ୍ୟ।

*''ତୁମେ କିଏ ?*
*ଡାହାଣୀ ଚିରୁଗୁଣୀ ନା ପିଚାଶୁଣୀ*
*ମାଲୁଣୀ ବୁଢ଼ୀ ଅବା କେଉଁ ଅସୁରୁଣୀ*
*ତୁମେ ଆସିବା ଦିନଠୁଁ ମୋର ଯେମିତି*
*କ'ଣ ହେଇଗଲା ? ସବୁ ବଦଳି ଗଲା।''(କେବେ କିଛିତ ଦେଇପାରିଲିନି)*

ଲୋକକଥାର ମାଲୁଣୀ ଫୁଲ ଶୁଙ୍ଘେଇ ମେଣ୍ଢାକୁ ଭେଣ୍ଡା ଓ ଭେଣ୍ଡାକୁ ମେଣ୍ଢାରେ ପରିଣତ କରିଦେଉଥିବା ରୂପକଥାଟି ସହିତ ଓଡ଼ିଆ ପାଠକେ ନିଶ୍ଚୟ ପରିଚିତ ଅଛନ୍ତି।

ତଥାପି ଏଠି କହିଦେବାର ଅଛି ଯେ ଭଲ କବିତାର ଆବେଦନ କେବଳ ମିଥ୍ ବା ଲୋକ-ଉପାଦାନ ଉପରେ ନିର୍ଭରଶୀଳ ହୋଇ ନିଜକୁ ପ୍ରତିଷ୍ଠା କରିପାରିବ ନାହିଁ। ଭାଷା ଓ ଶବ୍ଦ ପ୍ରୟୋଗର ବ୍ୟଞ୍ଜନା ଉପରେ କବିତା ସବୁଦିନେ ଅଧିକ ନିର୍ଭରଶୀଳ ହେବ ଏବଂ ଯେଉଁ କବିତାର ବ୍ୟଞ୍ଜନାର୍ଥ ଯେତେ ଶକ୍ତିଶାଳୀ ସେ କବିତାଟି ନିଶ୍ଚିତ ଭାବେ ପାଠକକୁ ସେତିକି ଆକୃଷ୍ଟ କରିବ। କବିତା ରଚନା କବିର ଚେତନା ମଧ୍ୟରେ ଏକପ୍ରକାର

ଜାରଣ ପ୍ରକ୍ରିୟା। ଯେଉଁ ସବୁ ଦୃଶ୍ୟ ବା ଭାବନାକୁ କବି ନିଜ ଇନ୍ଦ୍ରିୟ ସାହାଯ୍ୟରେ ଆସ୍ୱାଦନ କରେ ତାକୁ ସ୍ୱାନୁଭୂତି, ସ୍ୱଆବେଗ ଓ ସ୍ୱବୁଦ୍ଧିମତ୍ତା ମଧ୍ୟରେ ଫେଣ୍ଟାଫେଣ୍ଟି କରି ନୂତନଭାବେ ପରିବେଷଣ କରେ। ଏ ପ୍ରକ୍ରିୟାକୁ ସୁନ୍ଦର ଏକ ବ୍ୟଞ୍ଜନ ସହିତ ତୁଳନା କରାଯାଇପାରେ। ପରିବାପତ୍ର ଓ ମସଲା, ଲୁଣ, ଉତ୍ତାପ, ଜଳ– ଏ ସବୁର ସମାହାରରେ ଦିବ୍ୟ ତରକାରୀଟିଏ ପ୍ରସ୍ତୁତ ହେଲାପରି ଦିବ୍ୟ କବିତାଟିଏ କବିର ଆବେଗ ଓ ସଂବିତ୍‌ର ସମ୍ମିଶ୍ରଣରେ ଆସ୍ୱାଦିତ ମୂଳ ଉପାଦାନଟିକୁ ନୂତନ ବିଭୂତିରେ ରୂପାନ୍ତରିତ କରିପାରେ। ସେଠାରେ ମୂଳବସ୍ତୁଟି ହୁଏତ ତା'ର ସ୍ୱରୂପ ହରାଇଥାଏ– କିନ୍ତୁ ତା'ର ବସ୍ତୁତ୍ୱ ଏକ ସୂକ୍ଷ୍ମ ଚେତନାରେ ରୂପାନ୍ତରିତ ହୋଇଯାଏ। ଏପରି ଜାରଣ ପ୍ରକ୍ରିୟାକୁ ପ୍ରକାଶ କରେ କାବ୍ୟଭାଷା। ମୂଳବସ୍ତୁଟି ତାର ରୂପ ହରାଇବାପରି କାବ୍ୟ ଭାଷାରେ ସଂପ୍ରେଷିତ ଶବ୍ଦାବଳୀ ତାର ଅଭିଧା ଅର୍ଥକୁ ହରାଇ ଏକ ନିହିତାର୍ଥକୁ ବରଣ କରିନିଅନ୍ତି। ଏହାହିଁ ଭାଷାର ବ୍ୟଞ୍ଜନାଶକ୍ତି। କବିତାକୁ ରସୋତ୍ତୀର୍ଣ୍ଣ କରିବାରେ ଏହି ଶକ୍ତିଟି ଯୁଗେ ଯୁଗେ ଏକାନ୍ତ ଉପାଦେୟ ବିବେଚିତ ହୋଇଆସିଛି। ପ୍ରାଚୀନ ଆଳଙ୍କାରିକ କୁନ୍ତକ ବକ୍ରୋକ୍ତିକୁ କାବ୍ୟର ପ୍ରାଣ ବା ଜୀବନଭାବେ ପରିକଳ୍ପନା କଲାବେଳେ ବିଶିଷ୍ଟ ପଦ ସଂରଚନାକୁ ବା ରସାତ୍ମକ ବାକ୍ୟକୁ କବିତା ବୋଲି ବିଶ୍ୱନାଥ କବିରାଜ କହିଛନ୍ତି। ରମଣୀୟାର୍ଥ ପ୍ରତିପାଦକ ଶବ୍ଦକୁ ମଧ୍ୟ କବିତା ନାମରେ 'ରସ ଗଙ୍ଗାଧର'ର ଲେଖକ ଜଗନ୍ନାଥ କବିରାଜ ଉଲ୍ଲେଖ କରିଛନ୍ତି। ମୋଟ ଉପରେ ଏସବୁ ମନ୍ତବ୍ୟରୁ ସ୍ପଷ୍ଟ ହେଉଛି ଯେ ପଦ୍ୟର ଭାଷାଠାରୁ କବିତାର ଭାଷା ନିଶ୍ଚିତ ଭାବେ ସ୍ୱତନ୍ତ୍ର। ଯଦିଓ ଗଦ୍ୟ ଓ ପଦ୍ୟରେ ସମାନ ଭାବରେ ବା ଏକପ୍ରକାର ଶବ୍ଦଗୁଡ଼ିଏ ପ୍ରୟୋଗ କରାଯାଇଥାଏ ତେବେ କବିତାର ଭାଷାକୁ ବା କାବ୍ୟଭାଷାକୁ (diction) ଯାହା ସ୍ୱତନ୍ତ୍ର ଚିହ୍ନାଇଦିଏ, ତାହା ହେଉଛି ତା'ର ଅସସାଧାରଣ ପ୍ରୟୋଗବିଧି। ଏ ଭାଷା ବ୍ୟଞ୍ଜନାମୂଳକ, ପ୍ରତୀକାତ୍ମକ, ସୂଚନାତ୍ମକ (suggestive) ଚିତ୍ରକଳ୍ପନିର୍ଭର, ସଂଗୀତମୁଖର (sonic), ତରଳ ଓ ଆବେଗିକ ହୋଇଥିବାରୁ ଗଦ୍ୟର କର୍କଶ ବା ଗ୍ରାମ୍ୟ (colloquial) ଭାଷାଠାରୁ ଏହା ବାରି ହୋଇପଡେ। ତେଣୁ ଗଦ୍ୟରେ ଯେଉଁଠି ଭାଷା କବିତାର ଏହି ଧର୍ମକୁ ବହନ କରିଥାଏ, ଆମେ ତାକୁ କାବ୍ୟିକ-ଭାଷା ଭାବେ ନାମକରଣ କରିଥାଉ-ଯେପରି ଗୋପୀନାଥ ମହାନ୍ତିଙ୍କ 'ଅମୃତର ସନ୍ତାନ' ବା 'ମାଟିମଟାଳ'ର ଭାଷା, ସୁରେନ୍ଦ୍ର ମହାନ୍ତିଙ୍କ 'ପେକିଂ ଡାଇରି'ର ଭାଷା ବା କୁଞ୍ଜବିହାରୀ ଦାଶଙ୍କ ଭ୍ରମଣ କାହାଣୀର ଭାଷା। କବିତାର ଭାଷାକୁ ଆବେଗଧର୍ମୀ କରିବାପାଇଁ କବି, ରୂପକ (ମେଟାଫର), ଉପମା, ଉତ୍ପ୍ରେକ୍ଷା, ବକ୍ରୋକ୍ତି ଆଦିର ସାହାଯ୍ୟ ନିଏ। ଯାହାହେଲେ ବି ବ୍ୟଞ୍ଜନା ହିଁ କବିତାର ପ୍ରାଣ। କାରଣ ଏପରି ବ୍ୟଞ୍ଜନାଧର୍ମୀ ଶବ୍ଦମାନେ କବିତାରେ ପ୍ରାୟ ଅତିମାତ୍ରାରେ କାର୍ଯ୍ୟକ୍ଷମ (Charged) ହୋଇ ରହିଥାନ୍ତି। ଭାବକୁ ବହନ କରିନେବାପରି ଉପଯୁକ୍ତ କାବ୍ୟଭାଷା ନଥିଲେ ତାହା ଲକ୍ଷ୍ୟନିଷ୍ଠ ହୁଏନାହିଁ । କବିତାରେ ଭାଷା ଓ ଶବ୍ଦ ଅନୁଭୂତିର ଅନ୍ତରଙ୍ଗତାକୁ ପ୍ରକାଶ କରେ, ଅତ୍ମାକୁ ଚିହ୍ନାଇ ଦିଏ। ଏହି ପ୍ରକ୍ରିୟାରେ ସବୁ କବି ସମାନ ଭାବେ ସାଫଲ୍ୟର ଅଧିକାରୀ ହୋଇପାରନ୍ତି ନାହିଁ। ଯେଉଁ କବିର ଶବ୍ଦବସାଣ ଓ ଭାଷା ପ୍ରୟୋଗ ଯେତେ ଅନନ୍ୟ, ସେ କବିତା ସେତିକି ଭିନ୍ନ, ସେତିକି ପ୍ରଭାବଶାଳୀ। ଏପରିକି ଗୋଟିଏ ସାର୍ଥକ କବିତାର ପଂକ୍ତିଟିଏ ପଢୁପଢୁ ସଚେତନ ପାଠକ କହିଦେଇପାରେ କିଏ ତାର ଭଣିତା

ବା ସଂରଚକ? ଭାଷା ପ୍ରୟୋଗର ବୈଶିଷ୍ଟ୍ୟ ବା ଶୈଳୀ ହିଁ ଏପରି ଭିନ୍ନତାକୁ ଚିହ୍ନାଇଦିଏ। କିନ୍ତୁ ଯେଉଁଠି କବିତା ଭାବଧର୍ମକୁ ପରିହାର କରି କେବଳ ଭାଷା-ସର୍ବସ୍ୱ ହୋଇଯାଏ, ତାହା ଭଙ୍ଗୀରେ (pose) ପରିଣତ ହୁଏ ଓ କବିତାର ଦୃଷ୍ଟିଭଙ୍ଗୀକୁ ହରାଇବସେ। ଖାଲି ପ୍ରାନ୍ତୀୟମେଳଯୁକ୍ତ କିମ୍ବା ଅସମାନ ପଦ ବା ବାକ୍ୟ ଖଞ୍ଜିହେଲେ କବିତା ହେବନାହିଁ। ଏସବୁ ଗୋଟିଏ ସୁନ୍ଦର ଅର୍ଥପ୍ରତୀତି ସୃଷ୍ଟି କରୁଥିବ ଓ ଉପରେଠାଉରିଆ ଅର୍ଥଠାରୁ ନିହିତ ଅର୍ଥକୁ ଅଧିକ ସୂଚେଇ ଦେଉଥିବ। କାରଣ କବିତା ଗଦ୍ୟପରି ସିଧାସଳଖ ଅର୍ଥବାହୀ ଭାଷା ପ୍ରୟୋଗ କରେନାହିଁ। ସ୍ୱୈର ଜାଂଗଳିକ ସୁଷମାରେ କବିତାର ଭାଷା ରସସିକ୍ତ ହୋଇଥାଏ।

ପ୍ରାଚୀନ କବିତା ଥିଲା ଶବ୍ଦଭିତ୍ତିକ - କିନ୍ତୁ ସାଂପ୍ରତିକ କବିତା ଭାବଗର୍ଭକ। ଶବ୍ଦର ଅର୍ଥ ବୁଝିଗଲେ ପ୍ରାଚୀନ କବିତାର ସାମଗ୍ରିକ ଅର୍ଥ ସ୍ପଷ୍ଟ ହୋଇଉଠୁଥିଲା। କିନ୍ତୁ ଆଧୁନିକ କବିତାରେ ଶବ୍ଦର ଅର୍ଥ ବୁଝାଗଲେ ମଧ୍ୟ ଭାବ ତଥାପି ଗୁଂଫିତ ରହେ, ସାମଗ୍ରିକ ଅର୍ଥ ତଥାପି ସ୍ପଷ୍ଟ ହୁଏନାହିଁ। ତେଣୁ କବିତାରେ ଶବ୍ଦବସାଣ ଓ ଭାଷା ପ୍ରୟୋଗ ଅତି ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ଶବ୍ଦକୁ ବ୍ରହ୍ମ ଭାବେ ସମ୍ବୋଧିତ କରାଯାଇଛି। ଶବ୍ଦକୁ ଯଥାତଥା ବିନିଯୋଗ କଲେ ତାହା ଅଭିଳଷିତ ଅର୍ଥ ପ୍ରକାଶ କରେନାହିଁ, କାରଣ କବିତାହିଁ ଏକମାତ୍ର କଳା ଯେଉଁଠି ଶବ୍ଦର ସମ୍ଭାବନାକୁ ବିନିଯୋଗ କରାଯାଇପାରେ। ଯେଉଁ ଶବ୍ଦଗୁଡ଼ିକ ଘଷରା, ଅଚଳ, ଶକ୍ତିହୀନ ତା'କୁ ସଚେତନ କବି ପରିହାର କରିଥାଏ। ସେ ସବୁବେଳେ ଶକ୍ତିଶାଳୀ ଭାବବାହୀ ଶବ୍ଦ ଖୋଜେ। ଏହି ପ୍ରକ୍ରିୟାରେ ଯେଉଁ କବି ଯେତେ କୁଶଳୀ ତାଙ୍କ କବିତା ସେତିକି ସାର୍ଥକ ଓ ହୃଦୟ ସମ୍ବେଦୀ ହୋଇଥାଏ। ତେଣୁ କାବ୍ୟ-ଶୈଳୀର ଏହି ଗୁରୁତ୍ୱପୂର୍ଣ୍ଣ ପ୍ରସଂଗ ସଂପର୍କରେ କିଛି ଆଲୋଚନା କରାଯାଇପାରେ।

ନୀଳକଣ୍ଠଙ୍କ କାବ୍ୟଭାଷାକୁ ଲକ୍ଷ୍ୟ କରି ଏକଦା ପଣ୍ଡିତ ମାନସିଂହ ମନ୍ତବ୍ୟ ଦେଇଥିଲେ ଯେ ନୀଳକଣ୍ଠଙ୍କ 'କୋଣାର୍କ'ର ଭାଷାରେ ଯେଉଁ ସ୍ୱୈର ଜାଂଗଳିକ ସୁଷମା ଫୁଟି ଉଠିଛି ତାହା ଅନ୍ୟ କୌଣସି କବିଙ୍କ କବିତାରେ ଦେଖାଯାଏ ନାହିଁ।'' ଏପରି ଗୋଟିଏ ସୁନ୍ଦର ମନ୍ତବ୍ୟରେ ଅନେକ କଥା କୁହାହୋଇ ଯାଇଛି ଓ ରାଧାନାଥଙ୍କ ଭାଷା ପ୍ରୟୋଗର ବିଶେଷତ୍ୱକୁ ଲକ୍ଷ୍ୟ କରାଯାଇଛି। ବୋଧହୁଏ ରାଧାନାଥଙ୍କ ପରେ ସଚ୍ଚିଦାନନ୍ଦଙ୍କ କାବ୍ୟଭାଷାରେ ଆମେ ନିଜସ୍ୱ ଜାଂଗଳିକ ସୁଷମାକୁ ଉପଲବ୍ଧି କଲେ। କେତେବେଳେ ନୂତନ ଶବ୍ଦ ସୃଷ୍ଟିର ମୋହ ତ କେତେବେଳେ ତତ୍ସମ ଶବ୍ଦର ପ୍ରାଚୁର୍ଯ୍ୟ; କେତେବେଳେ କାବ୍ୟିକ ଅଭିଜାତ ଭାଷା ତ କେତେବେଳେ ବାକ୍-ପ୍ରବଣ ଗ୍ରାମ୍ୟ ଭାଷା। ଉଭୟ ଗୁରୁଲଘୁ ଭାଷା,ତତ୍ସମ ଓ ଦେଶଜ ଶବ୍ଦର ବ୍ୟବହାର-କୁଶଳ-ପ୍ରୟୋଗରେ ସଚ୍ଚିବାବୁଙ୍କ କବିତାର ଭାଷା ଖୁବ୍ ଭାବବାହୀ, ପ୍ରତୀକାତ୍ମକ, ଉଦ୍‌ବୋଧନ ମୂଳକ (evocative)ଓ ଶାଣିତ (Poignant)। ସେ ହିଁ ଓଡ଼ିଆ କବିତାରେ ଅଧିକ ପରିମାଣରେ ଚିତ୍ରଧର୍ମୀ ଶବ୍ଦ ଓ ପଦ ପ୍ରୟୋଗ କରିଛନ୍ତି। ମାଛ କାତି, ମେଘ ରାତି, ଗହମ ରଙ୍ଗର ଗାଲ, ଅଫିମ ରାତି, ଚର୍ବି ପରି ସ୍ନିଗ୍ଧ ନିଦ, ଘାସର ହ୍ରଦ, ଶବରୀ ଆଖି, କାମନାର ନୀଳାଭ ଚୌରଙ୍ଗୀ, ତରୁଭଜ ମଦ ପରି ଆଖି-ଏପରି ପ୍ରୟୋଗରେ ଯେଉଁ କାବ୍ୟିକ ସୁଷମା ଓ ମାଧୁର୍ଯ୍ୟ ପ୍ରକାଶ ପାଇଛି ତା'ର ତୁଳନା ନାହିଁ। କିନ୍ତୁ ତାଙ୍କରି ସମସାମୟିକ କବି ଅନନ୍ତ ପଟ୍ଟନାୟକ ଆନୁପ୍ରାସିକ ଭାଷା ପ୍ରୟୋଗରେ ଖୁବ୍ ଦକ୍ଷତା

ପ୍ରଦର୍ଶନ କରିଥିଲେ। ଅଥଚ ଏ ଦୁଇ ପ୍ରକାର ଭାଷା ଗୁରୁପ୍ରସାଦଙ୍କ ଦ୍ୱାରା ପ୍ରାୟ ପ୍ରତ୍ୟାଖ୍ୟାତ ହୋଇଗଲା। ତାଙ୍କ ଭାଷା ହୋଇଉଠିଥିଲା ଅଧିକ ବ୍ୟଞ୍ଜନାଧର୍ମୀ, ବୁଦ୍ଧିବାଦୀ, ତାତ୍ପର୍ଯ୍ୟପୂର୍ଣ୍ଣ ଶାଳୀନ ଭାଷା। ଟି.ଏସ୍.ଇଲିୟଟଙ୍କ ପ୍ରବନ୍ଧରେ ଏହିପରି ଭାଷାକୁ ଓ୍ୱିଟ୍ (wit) ଆଇରନି (irony) ଓ ଅର୍ବାନିଟି (urbanity) ବୋଲି ନାମିତ କରାଯାଇଛି। ଖୁବ୍ ସରଳ ସୀମିତ ସଂଖ୍ୟକ ଶବ୍ଦସମ୍ଭାରରେ ଏ ଭାଷା ଖୁବ୍ ସାଙ୍ଗୀତିକ ଓ ସାବଲୀଳ। ଗୋଟିଏ ଗୋଟିଏ ଶବ୍ଦକୁ ବାରମ୍ବାର ସଚେତନଭାବେ ପ୍ରୟୋଗ କରି ଗୁରୁପ୍ରସାଦ କବିତାରେ ସାଙ୍ଗୀତିକ ସମ୍ମୋହ ସୃଷ୍ଟିକରିବାକୁ ଉଦ୍ୟମ କରିଛନ୍ତି। ରମାକାନ୍ତଙ୍କ କାବ୍ୟଭାଷା ତାଙ୍କର ଏକାନ୍ତ ନିଜସ୍ୱ ଯଦିଓ ତାଙ୍କ ଭାଷାରେ ଇଂରେଜୀ କାବ୍ୟ-ସଂରଚନାରୀତିର ପ୍ରଭାବ ସ୍ପଷ୍ଟ ହୁଏ। ଅର୍ଥାତ୍ ତାଙ୍କ ପୂର୍ବରୁ କୌଣସି କବି ଓ, ଏବଂ, ବା, କିମ୍ବା, ଅଥବା ଆଦି ଅବ୍ୟୟକୁ କାବ୍ୟ ପଂକ୍ତିର ଆଦ୍ୟରେ ରଖି ବୋଧହୁଏ କବିତା ରଚନା କରିନଥିଲେ। ପ୍ରୟୋଗବାଦୀ କାବ୍ୟରଚନା କାଳର କାବ୍ୟ-ଭାଷାକୁ କ୍ରମେ ପରିହାର କରି ରମାକାନ୍ତ ଶଂସିତ ସମୟରେ (୧୯୬୭-୯୨)ଭାଷାକୁ ଅଧିକ ଆବେଗପ୍ରବଣ ଓ ସଙ୍ଗୀତପ୍ରବଣ କରିବାକୁ 'ଶ୍ରୀରାଧା'ରେ ଚେଷ୍ଟା କରିଛନ୍ତି। ରମାକାନ୍ତଙ୍କ କାବ୍ୟଭାଷାର ଅନ୍ତରାଳରେ ଚମତ୍କାର ଏକ ଅନ୍ତର୍ଦ୍ୱନ୍ଦ୍ୱ ଅନୁରଣିତ ହେଉଥାଏ। କବି ସୌଭାଗ୍ୟଙ୍କ ଭାଷା ଏକାନ୍ତ ଗଦ୍ୟସର୍ବସ୍ୱ ଖୁବ୍ ଉପଳ-କଠିନ ଖୁବ୍ ବକ୍ତବ୍ୟଧର୍ମୀ, ଧ୍ୱନିମୂଳକ; ଆପାତତଃ ଉପରକୁ ଖୁବ୍ ଆବଡ଼ା ଖାବଡ଼ା (crude) ମନେ ହେଲେ ବି ଖୁବ୍ ବୁଦ୍ଧିଦୀପ୍ତ ଓ ବ୍ୟଞ୍ଜନାପୂର୍ଣ୍ଣ। ଭାଷାପ୍ରୟୋଗରେ ସୌଭାଗ୍ୟଙ୍କ ଠିକ୍ ବିପରୀତ କୋଟୀରେ ଅବସ୍ଥାନ କରିବେ କବି ପ୍ରତିଭା ଶତପଥୀ। ତାଙ୍କ ଭାଷା ଏକାନ୍ତ ଭାବ ତରଳ, ଆବେଗ ପ୍ରବଣ, ସାବଲୀଳ (lucid) ସ୍ୱତଃସ୍ଫୂର୍ତ୍ତ (spontaneous) ଓ ସଙ୍ଗୀତ ମୁଖର (sonic); ପାଠକକୁ ଅଭିଭୂତ କରି ରଖିବା ପରି ନାରୀ କଣ୍ଠର ଉଚ୍ଚାରଣ। କିନ୍ତୁ ସୀତାକାନ୍ତଙ୍କ ଭାଷା ପ୍ରୟୋଗ ଓଡ଼ିଆ କବିତାକୁ ସାରଳା ଦାସଙ୍କ ଭାଷା ଆଡ଼କୁ ମୁହାଁଇ ନିଏ। ସାରଳାଦାସଙ୍କ ବିରାଟ କାବ୍ୟକୃତି ମହାଭାରତରେ ଶବ୍ଦ ପ୍ରୟୋଗର ବିଶେଷତ୍ୱ ଜଗନ୍ନାଥ ଦାସଙ୍କ ଅଭିଜାତ ମାନକ (Standard) ଓଡ଼ିଆ ଭାଷା ପାଖରେ ଏକ ଆହ୍ୱାନର ସମ୍ମୁଖୀନ ହୋଇଥିଲା। ଜଗନ୍ନାଥ ଦାସଙ୍କ ଭାଷା ଓଡ଼ିଆ କବିତାକୁ ଦେଇଥିଲା ଅର୍ଥ ବିସ୍ତାର; ଓଡ଼ିଆ ଭାଷାର ନିଜସ୍ୱ ବିଭବ ଓ ଶକ୍ତି ପ୍ରତି ସଚେତନ କରି ଦେଇଥିଲା। ଅଥଚ ସଚ୍ଚିବାବୁଙ୍କ ବେଳକୁ ଏ ଉଭୟ ଭାଷା ପ୍ରାୟ ତାର ଆବେଦନ ହରାଇ ବସିଥିଲା। ସୀତାକାନ୍ତ ତାଙ୍କ କବିତାରେ ଅତି ସଚେତନ ଭାବେ ସାରଳା ମହାଭାରତର ଭାଷା ଓ କଥିତ ଗ୍ରାମ୍ୟ ଭାଷା ଭିତରେ ସମନ୍ୱୟ ସ୍ଥାପନ କରିବାକୁ ଉଦ୍ୟମ କଲେ। ତାଙ୍କ କବିତାରେ ଦୁଶିବା, ନିଚିପର, କେବଣ, ଶୋଭାବନ, ମନମରା, ମିତଣି, ପେଡ଼ି, ପୁଟୁଳି, ପେଟରା, କୋଥଳି, ଦେଇପିଣ୍ଡି, ଠିରିକି, ଅନିଭୋଗ, ମୁହାଁସ, ସାମରଥା, ଅଣ୍ଟାସୁତା, କଣ୍ଠିକାଠି, ପଲମ, ଚକୁଳି ଆଦି ଅପ୍ରଚଳିତ କିମ୍ବା ଗ୍ରାମ୍ୟ ପ୍ରଚଳିତ କଥିତ ଶବ୍ଦମାଳା ସହିତ ପାଠକର ସାକ୍ଷାତ ହୁଏ। କିନ୍ତୁ କବି ରାଜେନ୍ଦ୍ର କିଶୋର ପଣ୍ଡାଙ୍କ କବିତାରେ ସଂପୂର୍ଣ୍ଣଭାବେ ତତ୍ସମ ଓ ଆଗରୁ କୌଣସି କବିଙ୍କ କାବ୍ୟ ଭାଷାରେ ପ୍ରୟୋଗ ହୋଇ ନଥିବା ଶବ୍ଦମାଳା ପ୍ରତି ଅଧିକ ଆସକ୍ତି ଲକ୍ଷ୍ୟ କରିହୁଏ। ଅପ୍ରଚଳିତ, କଠିନ, କ୍ଲିଷ୍ଟ, ଦୀପ୍ତ ଶବ୍ଦାବଳୀ (jargons) ସ୍ୱାଭାବିକ ଭାବେ ତାଙ୍କ କବିତାକୁ ଦୁର୍ବୋଧ୍ୟ କରିଦିଏ। ବିନା ଅଭିଧାନରେ କବିତାର

ମର୍ମ ବୁଝିବା ଏକାନ୍ତ ଅସମ୍ଭବ ହୋଇ ଉଠେ। ଉଦାହରଣ ସ୍ୱରୂପ ଧୂନନ, କୋଟିଧା, ପଦ୍ମଧା, ଅଗନ, ଅଭ୍ୟଂଗ, ଗୁଂଧାଣ, ମାତର୍ଷି, ହୃଣ୍ମୟ ଆଦି ଶବ୍ଦ ପ୍ରାୟ ସାଂପ୍ରତିକ ଓଡ଼ିଆ କବିତାରେ ଶ୍ରୀ ପଣ୍ଡାଙ୍କ ବ୍ୟତୀତ ଆଉ କେହି ପ୍ରୟୋଗ କରି ନାହାନ୍ତି। ପୁନଶ୍ଚ କ୍ରିୟା ବିଶେଷଣ ପ୍ରୟୋଗରେ ସେ ଅନେକ ନୂତନ ଶବ୍ଦ ତିଆରି କରନ୍ତି ଓ କେହି କେହି ତରୁଣ କବି ଏପରି ପ୍ରୟୋଗ ପ୍ରତି ଅଭିଳଷିତ ହେଉଥିବା ମଧ୍ୟ ଲକ୍ଷ୍ୟ କରାଯାଏ। ସମୁଦ୍ରେଇ ନିଏ, ହିନ୍‌ହିନେଇ ଉଠେ, ଆପଣେଇ ନେବା, ନିଜେଇ, ଛଳଛଳେଇ, ଗଦ୍‌ଗଦେଇ

ଏପରି ପ୍ରୟୋଗ ଆଗରୁ ହୋଇଥିବା ପରି ମନେ ହୁଏ ନାହିଁ। ଶ୍ରୀ ହରପ୍ରସାଦଙ୍କ କାବ୍ୟ ଭାଷା ଛୋଟ ଛୋଟ ଖଣ୍ଡିତ ପଂକ୍ତିରେ ଏତେ ବୁଦ୍ଧିଦୀପ୍ତ ଯେ କେଉଁଠି ନା କେଉଁଠି ଭାବଟି ଯେପରି ବାଂଧି ହୋଇଯାଏ। ଖୁବ୍ ସ୍ଥିତଧୀ ପାଠକ ସେ ଗ୍ରନ୍ଥି ଉନ୍‌ମୋଚନ କରି ପାରିଲେଇ ଭାବ ନିକଟରେ ପହଂଚି ପାରିବ ହୁଏତ। ରମାକାନ୍ତଙ୍କ ଶବ୍ଦ ପ୍ରୟୋଗର ଶକ୍ତିଶାଳୀ ପ୍ରଭାବ କେତେକାଂଶରେ ହରପ୍ରସାଦଙ୍କ କବିତାକୁ ଛୁଇଁ ଯାଏ। ସେଇ ଅନୁକ୍ରମ କବି ନୃସିଂହ ପ୍ରସାଦ ତ୍ରିପାଠୀ ଓ ମମତା ଦାଶଙ୍କ କବିତାକୁ ବି ପ୍ରଭାବିତ କରେ। କିନ୍ତୁ ହରପ୍ରସାଦଙ୍କ କବିତା ସାଂଦ୍ରତା (Compactness) ଉପରେ ଅଧିକ ଆସ୍ଥା ସ୍ଥାପନ କଲାବେଳେ ମମତାଙ୍କ କବିତାର କାବ୍ୟ ସଂଗଠନ ବେଳେବେଳେ କବିତାର ଦୀର୍ଘତା ହେତୁ ବାଧାପ୍ରାପ୍ତ ହୁଏ। ହରପ୍ରସାଦଙ୍କ କାବ୍ୟ ଭାବନାର ବିପୁଳ ବ୍ୟକ୍ତିଗତତା କାବ୍ୟ ଭାଷାର ସାର୍ବିକ ଆବେଦନ ପାଇଁ ଅପେକ୍ଷା ରଖୁଥିଲାବେଳେ ସେ କେବଳ ଇଙ୍ଗିତରେ କହିଦେଇ ନିଷ୍କ୍ରାନ୍ତ ହୋଇଯାନ୍ତି। ତେଣୁ ପାଠକ ଧଂନ୍ଦି ହେବା ହିଁ ସାର ହୁଏ। ବହୁ ତରୁଣ କବି ଭାଷା ପ୍ରୟୋଗରେ ଅଜ୍ଞେ ବହୁତେ ଏହି ଦୁରବସ୍ଥାର ସମ୍ମୁଖୀନ ହୁଅନ୍ତି।

ସୀତାକାନ୍ତଙ୍କ କାବ୍ୟ-ଭାଷାର ପ୍ରଭାବ କବି ହୃଷିକେଶ ମଲ୍ଲିକଙ୍କ କାବ୍ୟ ଭାଷାରେ ସ୍ପଷ୍ଟ ଲକ୍ଷ୍ୟ କରାଗଲେ ବି ସୀତାକାନ୍ତଙ୍କ ଅପେକ୍ଷା ହୃଷିକେଶ ଗ୍ରାମ୍ୟ ଶବ୍ଦବହୁଳ ନିଜସ୍ୱ କାବ୍ୟ-ଭାଷାକୁ ସ୍ୱଚ୍ଛଂଦ ଅନୁରଣନ ଦେଇପାରନ୍ତି ଓ ସେ ଭାଷା କେବଳ ଧାନ ସାଉଁଟା ଝିଅର ବା ନିରାଭରଣା ଚଷା ଝିଅର ଭାଷା ନୁହେଁ, ସେ ଭାଷା ବି ଅଭିଜାତ ଗ୍ରାମ୍ୟ ଜନତାର ହୋଇଉଠେ। ତେଣୁ ଖୁବ୍ ଅନନ୍ୟ ଓ ଆକର୍ଷଣୀୟ ମନେ ହୁଏ। ରତାସଂଜ, ମାଇସଂଜ, ନିରନ୍ତ, ଭାବନ୍ତି, ହୁଦୁତି, ନୁଣସାମୁକେ, ଟାଉକି ଝିଅ, ଘଇତାମାରି ପାଟ, ହେଁସୁଆତି, ଙ୍ଗଂଚେଇବା,ଗମୁଛିଆ, ନୁଖୁରା, ଭୁଆଷୁଣୀ, ଥେନ୍ତେଇ, ଛେଉଣ୍ଡ ଏହିପରି ରାଶି ରାଶି ଶବ୍ଦ ସହରୀ କବିମାନେ ଯେ ଭୁଲି ସାରିଥିଲେ ହୃଷିକେଶ ଏ ସବୁ ଶବ୍ଦର ଶକ୍ତି ପରୀକ୍ଷା କରିଛନ୍ତି ତାଙ୍କ ରଚିତ ଶତାଧିକ କବିତାରେ। ଡାକ୍ତର ମାନସିଂହଙ୍କ ଭାଷାରେ ହୁଏତ କୁହାଯାଇପାରେ ଯେ ହୃଷିକେଶ ତାଙ୍କ କବିତାକୁ ସ୍ୱୈର ଜାଂଗଳିକ ସୁଷମାରେ ମଣ୍ଡି ଦେଇଛନ୍ତି। ତେଣୁ ନିଜସ୍ୱ କାବ୍ୟଭାଷାରେ ତାଙ୍କ ପୀଢ଼ିର କବିମାନଙ୍କ ମଧ୍ୟରେ ସେ ଏକାନ୍ତ ଏକକ ଭାବେ ବାରି ହୋଇପଡ଼ନ୍ତି। ଭାଷା ପ୍ରୟୋଗରେ ଶ୍ରୀ ଶରତଚନ୍ଦ୍ର ପ୍ରଧାନଙ୍କ କବିତାରେ କିଛି ସ୍ୱୈରତା ପ୍ରକାଶ ପାଇଛି। କବି ହରପ୍ରସାଦ ଦାସଙ୍କ ପରି କିମ୍ବା କବି ଦୁର୍ଗାଚରଣ ପରିଡ଼ାଙ୍କ ପରି ଛୋଟ ଛୋଟ ପଦ ବା ପଂକ୍ତି ବ୍ୟବହାର କଲେ ବି ଶ୍ରୀ ପ୍ରଧାନ ଅଧିକ ଗୀତିପ୍ରବଣ (lyrical) ଓ ଆବେଗପ୍ରବଣ ମନେ ହୁଅନ୍ତି ଓ ତାଙ୍କ କବିତା ପଂକ୍ତି ଗୁଡ଼ିକ ସହସା ଅର୍ଥ ଆବେଦନକ୍ଷମ ହୋଇ ଉଠନ୍ତି। ହରପ୍ରସାଦଙ୍କ କବିତା ସମଗ୍ରକୁ ବାରମ୍ବାର

ପଢ଼ି କବିତାର ଅର୍ଥକେନ୍ଦ୍ରରେ ପହଁଞ୍ଚିବାକୁ ହୁଏ କିନ୍ତୁ ଶ୍ରୀ ଶରତଚନ୍ଦ୍ର ପ୍ରଧାନ ପାଠକଙ୍କୁ ପ୍ରାୟ ନିଜ ବକ୍ତବ୍ୟ ସହିତ ଜଡ଼ିତ କରିରଖନ୍ତି।

ସାଂପ୍ରତିକ ଓଡ଼ିଆ କବିତାର ଶିଳ୍ପବିଧି ସଂପର୍କୀୟ ଏ ଆଲୋଚନା ପରେ ତା'ର ବିସ୍ମୟକର ଆତ୍ମିକ ଆଭିମୁଖ୍ୟ ସଂପର୍କରେ କିଛି ଆଲୋଚନା କରାଯିବା ନିହାତି ଅପରିହାର୍ଯ୍ୟ ମନେହୁଏ। ପ୍ରୟୋଗବାଦୀ ସମୟର କାବ୍ୟ ଆଭିମୁଖ୍ୟ ଶଂସିତ ପଚିଶ ବର୍ଷ ମଧ୍ୟରେ କେବଳ ଘଟାନ୍ତର ନେଇ ନାହିଁ, ବେଳେବେଳେ ଖୁବ୍ ପରିପୃକ୍ତ ହୋଇଛି ମଧ୍ୟ। ତେବେ ଯେଉଁ ତିନୋଟି ମୁଖ୍ୟ ଚେତନା ଓଡ଼ିଆ କବିତାର ଦୈର୍ଘ୍ୟ, ପ୍ରସ୍ଥ ଓ ଗଭୀରତାକୁ ମାଡ଼ି ରହିଛି, ତାହା ନିଶ୍ଚିତ ଭାବରେ ସାଂପ୍ରତିକ କାବ୍ୟଚିନ୍ତାରେ ସମୟ ଚେତନା, ମୃତ୍ୟୁଭାବନା ଓ ଇନ୍ଦ୍ରିୟୋଭର ପାରତ୍ରିକ ଭାବନା ଭାବେ ଚିହ୍ନିତ ହୋଇପାରିବ। ଏଇ ତିନୋଟି ଆତ୍ମିକ ବିଭବ ତା'ର ସୂକ୍ଷ୍ମ ନାଂଦନିକ ରୂପାୟନରେ ଓଡ଼ିଆ କବିତାକୁ କେବଳ ପରଂପରା ସହିତ ଯୋଡ଼ି ଦେଇନାହିଁ ସମଗ୍ର ଭାରତୀୟ ଚିଭାକାଶରେ ଓଡ଼ିଆ କାବ୍ୟ ଚେତନାକୁ ଦୀପ୍ତିମନ୍ତ ଶୁକ୍ର ତାରାର ଗୌରବ ଆଣି ଦେଇଛି। ସମକାଳ ସହିତ ସର୍ବକାଳର, ମୁହୂର୍ତ୍ତ ସହିତ ମହାକାଳର ସଂଯୋଜନାରେ ଆଧୁନିକ କବିତା ଯେଉଁପରି ରସଗର୍ଭା, ଜୀବନ ସହିତ ମୃତ୍ୟୁ ଓ ଭୂମି ସହିତ ଭୂମାର ସୂକ୍ଷ୍ମ ମନସ୍ତାତ୍ତ୍ୱିକ ଯୋଗସୂତ୍ର ସ୍ଥାପନରେ ସେହିପରି ଦାର୍ଶନିକ ଓ ମନନଶୀଳ। ଜୀବନାନୁଭୂତିର ନାନାଦି ଚର୍ଯ୍ୟା ଓ ଚାରଣରେ ସାଂପ୍ରତିକ କବିତା ଯେତିକି ବାସ୍ତବଧର୍ମୀ ଉଗ୍ର ବାସ୍ତବତାର ପୀଡ଼ନରେ ସେତିକି ଅତିବାସ୍ତବ (Surrealistic), ଆଧାତ୍ମିକ ଆସ୍ପୃହାରେ ଉଚ୍ଚାଟିତ ଏକ ପ୍ରାଣମୟ ଶାଣିତ ଅଭିବ୍ୟକ୍ତି ମଧ୍ୟ। ତେଣୁ ଏପରି କବିତାର ବିଭୂତିକୁ କୌଣସି ସମାଲୋଚନାର ଭାଷାରେ ବୁଝାଇବା ସମ୍ଭବ ନୁହେଁ—ଯେହେତୁ ଭାବ ପ୍ରକାଶ ପାଇଁ କବିତା ସବୁବେଳେ ଧ୍ୱନି, ବକ୍ରୋକ୍ତି ଓ ବ୍ୟଞ୍ଜନାଶ୍ରିତ। ସେହେତୁ ଗଦ୍ୟର ଅଭିଧା—ସାମର୍ଥ୍ୟରେ କବିତାର ଜଟିଳ ଭାବାନୁଷଙ୍ଗକୁ ପ୍ରକାଶ କରିବା ଦୁରୂହ ବ୍ୟାପାର ନିଶ୍ଚୟ। ସେଥିପାଇଁ ଇତସ୍ତତଃ କେତୋଟି ଉଦ୍ଧୃତି ମାଧ୍ୟମରେ ଉପର ଲିଖିତ ତିନୋଟି ଚେତନାକୁ ବୁଝାଇବା ପାଇଁ ଏଠାରେ ସୀମିତ ପ୍ରୟାସ କରାଯାଇଛି ମାତ୍ର।

## ସମୟ ଚେତନା :

ନଈର ସ୍ରୋତପରି, କିମ୍ବା ବାୟୁପ୍ରବାହ ପରି କିମ୍ବା ସମୁଦ୍ରର ଢେଉ ପରି ନିୟତ ପ୍ରବାହିତ ହୋଇଯାଉଥିବା ଏ ସମୟ ସ୍ରୋତକୁ କେଉଁ କାଳ ବା ବାଂଧି ରଖିପାରିବ? ହୁଏତ ସମୟ ଏକ କାଳବାଚୀ ଶବ୍ଦ—କିନ୍ତୁ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ବାହାରେ ଆଉ ଏକ ସମୟ ଅଛି ଯାହା ଅବିଭାଜ୍ୟ, ଅଖଣ୍ଡ, ଶାଶ୍ୱତ ବା ମହାକାଳ—ତା'ପ୍ରତି କବିର ଆତ୍ମିକ ଆସକ୍ତି କିଛି କମ୍ ନୁହେଁ। ପୁଣି ପ୍ରବହମାନ ସମୟର ଦଂଶନରେ କବି ପ୍ରାଣ କେତେ ଜର୍ଜରିତ ତାର ବ୍ୟଥିତ ଓ ଆସକ୍ତ ସ୍ୱରଲିପି ମଧ୍ୟ ବହୁ କବିତାରେ ସ୍ପଷ୍ଟ। ସମୟର ଅବକ୍ଷୟ ପ୍ରତି କବି ଯେତିକି ସଚେତନ ସେତିକି ବିଗତ ସମୟର ସ୍ମୃତିଦ୍ୱାରା ଉତ୍ପୀଡ଼ିତ ମଧ୍ୟ। ସମୟର କୃପଣତାକୁ ସେ ହାଡ଼େ ହାଡ଼େ ଅନୁଭବ କରେ, କାରଣ ତାହା ଆଉ ଥରେ ତାର ଯୌବନ ଓ ପ୍ରେମର ପ୍ରତୀକ ଗୋଟିଏ ଚଂଦ୍ରପକ୍ଷ ରାତି ତାକୁ ଫେରାଇ ଦେଇ ପାରିବ ନାହିଁ। ବରଂ ନିଷ୍ଠୁର ସମୟ କୋଇଲିର ବେକ ଚିପି

ଦେବ ଓ ଉପରଓଳିକୁ ଅପହଞ୍ଚ ଅନ୍ଧକାରର ସିନ୍ଦୁକ ଭିତରେ ରଖିଦେବ। ତାର ନିବୁଜ ବଳୟ ଭିତରୁ ଖସି ଆସିବା ଶକ୍ତି ମଣିଷର ନାହିଁ। କେତେ ଚମତ୍କାର ପ୍ରତୀକ ଓ ରୂପକଳ୍ପଧର୍ମୀ କାବ୍ୟଭାଷାରେ କବି ରମାକାନ୍ତ ସମୟର ଏଇ ନିଷ୍ଠୁରତାକୁ ଉପଲବ୍ଧି କରି ନାହାନ୍ତି! ତଥାପି ସମୟ ସମୁଦ୍ର ପାଖରେ ତାଙ୍କ ଦଇନିର ଶେଷ ନାହିଁ। ଆଜିଙ୍କ ମାତ୍ର ସେ ଶରତର ସୁନ୍ଦର ଶୀତଳ ରାତିଟିଏ ଲୋଡ଼ନ୍ତି। ଯେଉଁଠି ସେ ଝରଣା ପରି କୁଳୁକୁଳୁ ଶବ୍ଦରେ ବହୁ ସଂଗୀତ ଶୁଣାଇ ପାରିବେ ଏବଂ ଶୁଣିପାରିବେ ଭଲପାଇବାରେ ଉଲ୍ଲାସର ପ୍ରତିଧ୍ୱନି। ଭବିଷ୍ୟତ କାଲି ହୁଏତ ଶୀତଳ ସମୁଦ୍ର (ମୃତ୍ୟୁ)ର ଚିରନ୍ତନ ଆଲିଙ୍ଗନରେ ଅନନ୍ତକାଳ ପାଇଁ ପୃଥିବୀରୁ ତାଙ୍କୁ ଅନ୍ତର୍ହିତ କରିନେବ। ପାରମ୍ପରିକ ସମୟ ଚେତନାର ଏହି ତ୍ରିକାଳ ବିଭାଜନକୁ କବି ଟି.ଏସ୍. ଏଲିୟଟ୍ ଏକ ସମନ୍ୱିତ ଅର୍ଥରେ ପ୍ରଥମେ ପ୍ରକାଶ କରନ୍ତି ବର୍ତ୍ତମାନର ବିନ୍ଦୁରେ ଠିଆ କରାଇ।

*"Time past and time present*
*Are both perhaps present in time future.*
*And time future contained in time past.*
*If all time is eternally present.*
*All time is unredeemable." (Four Quartet)*

କବିଙ୍କ ଚିନ୍ତାରେ ସମୟ ଏକପକ୍ଷରେ ଧ୍ୱଂସ ଓ ଅପର ପକ୍ଷରେ ସଂରକ୍ଷଣର ପ୍ରତୀକ। (Time, the destroyer is the time, the preserver). ତେଣୁ ପ୍ରଥମ ପୃଥିବୀ ମହାଯୁଦ୍ଧ ପରବର୍ତ୍ତୀ ସମୟର ଅବକ୍ଷୟରେ ତାଙ୍କ କାବ୍ୟପୁରୁଷ ପ୍ରପୀଡ଼ିତ ହୋଇ ଆଉ ଏକ ସୁନ୍ଦର ସମୟର ଅପେକ୍ଷାରେ ଉର୍ଦ୍ଧ୍ୱକୁ ହାତଟେକି ରହେ। ପ୍ରୟୋଗବାଦୀ ଓଡ଼ିଆ କବିତାରେ ଏପରି ଭାବନାର ପ୍ରାଚୁର୍ଯ୍ୟ ଦେଖିବାକୁ ମିଳେ। କବି ଗୁରୁପ୍ରସାଦ ଆଗ ଓ ପଛ (ଭବିଷ୍ୟତ ଓ ଅତୀତ) ସବୁଆଡ଼େ ଶୁଣିପାରନ୍ତି ସମୟର ପାଦ ଶବ୍ଦ। "ମୁଁ ଶୁଣେ କାନରେ ମୋର/ଠିକ୍ ମୋର ପଛଆଡ଼େ ପାଦଶବ୍ଦ ସମୟର/ଚୁପ୍‌ଚାପ୍ କଥା ସମୟର" (କାଳପୁରୁଷ)। ବର୍ଷା ଋତୁକୁ ନିର୍ମମ ଓ ନିଷ୍ଠୁରଭାବେ ଗୁରୁପ୍ରସାଦ ଚିହ୍ନିତ କରିଥିଲାବେଳେ କବି ରମାକାନ୍ତ 'ସପ୍ତମ ଋତୁ'ରେ ଏଇ ଜାଗତିକ ଋତୁଜନିତ ପ୍ରଭାବକୁ ନିଃସମୟତାରେ ନିଶ୍ଚିହ୍ନ କରିଦେଇଛନ୍ତି। ଜୀବନର ସକଳ ବିଷାଦ ଓ ଅଚରିତାର୍ଥତାର କାରଣ ଭାବେ ସେ ସମୟକୁ ଦାୟୀ କରିଛନ୍ତି। ଜୀବନ ଓ ମୃତ୍ୟୁ ମଧ୍ୟବର୍ତ୍ତୀ ଏଇ ସମୟର ଦୁଃସହ ପୀଡ଼ାକୁ କବି ବାରମ୍ବାର ଚିତ୍ତଭୂମିରେ ହୁଏତ ଅନୁଭବ କରିଛନ୍ତି; ଅତି କାକୁସ୍ଥଭାବେ ଏକ ସ୍ମୃତିସିକ୍ତ ଅତୀତ ପାଖୁ ପଳାୟନ କରିଛନ୍ତି କିମ୍ବା ବିପନ୍ନ ସମୟଠାରୁ ମୁକ୍ତି ପାଇଁ ଛ'ଖଣ୍ଡି କାଠର ସାନ୍ନିଧ୍ୟ ଲୋଡ଼ିଛନ୍ତି। କେତେବେଳେ ସମୟକୁ ଆତତାୟୀ ମନେ କରି କବି କହିଛନ୍ତି, "ମୁଁ ଦେଖିବି ମୋ ସମୟ ବସିଅଛି ଆତତାୟୀ ପରି/ମୋ ବାଟକୁ ଚାହିଁ ତମ ଛବି ଅଙ୍କା ପାର୍ଶା ହାତେ ଧରି।" (ଶେଷ ଦିନ ଅସରନ୍ତି ଦିନ)" ପୁଣି କେତେବେଳେ ଶାଶ୍ୱତ ସମୟ ପ୍ରତି ଆସ୍ଥା ପ୍ରକଟ କରି କବି କହନ୍ତି: *"ଏଠାରେ କେବଳ ଅଛି ଗୋଟିଏ ସମୟ/ ସେଥିରେ ଜୀବନ ପରେ ମୃତ୍ୟୁ ନାହିଁ କିମ୍ବା ମୃତ୍ୟୁପରେ/ ପ୍ରାୟଶ୍ଚିତ ନାହିଁ, ସବୁ ମିଶାମିଶି ହେଇ/ ସମୟରେ ଏବଂ ଯେବେ ସେ ସମୟ ସରିଯିବ କିଛି/ ନଥିବ କେବଳ ଥିବ ଅମାପ ଅନ୍ଧାର।"* (ତମେ ଚାଲିଯିବା ପରେ)

ପରବର୍ତ୍ତୀ ସମୟକୁ କବି ରମାକାନ୍ତ ସର୍ବତ୍ର ଏକ ଜୀବନ୍ମୃତ ଅବସ୍ଥା ଭାବେ ଦେଖିଛନ୍ତି ଓ ଚିରନ୍ତନ ସମୟପ୍ରତି ଆସ୍ପୃହା ଜାରି ରଖିଛନ୍ତି। ସୀତାକାନ୍ତ କିନ୍ତୁ ପ୍ରବହମାନ ସମୟର କ୍ଷିପ୍ରତା ପ୍ରତି ଅଧିକ ସଚେତନ। *"ଆଖି ପିଛୁଡ଼ା ନପଡୁଣୁ/ସବୁ କଥା କାଲି ଭିତରକୁ ହିଁ ଚାଲିଯାଇଥାଏ/ କି କୁହୁକ ଜାଣେ ସମୟ, ତା ହାତ ବାଜିଲେ/ସବୁ ଆଜି କାଲି ହୋଇଯାଏ।"* ଆଜିର ଶିଶୁଟିକୁ ନିଷ୍ଠୁର ସମୟ ତା'ର ଅଜାଣତରେ ବାର୍ଦ୍ଧକ୍ୟର ଦ୍ୱାରଦେଶରେ ପହଁଚାଇଦିଏ। ସମୟକୁ କେତେ ନାମରେ କବି ସମ୍ବୋଧନ କରନ୍ତି, ସମୟର ଶବାୟିତ ତରଂଗରେ ନିଜକୁ ଭସାଇ ଦିଅନ୍ତି; କିନ୍ତୁ ଶେଷକୁ ଉପଲବ୍ଧି କରନ୍ତି ସମୟର ସହସ୍ର ନାମ ମଧ୍ୟରୁ ଶେଷ ନାମଟିହିଁ ନିର୍ଜନତା। ଆମ ସମସ୍ତଙ୍କୁ ଦିନେ ସେଇଠାରେ ହିଁ ପହଁଚିବାକୁ ହେବ। ସମୟ ପ୍ରତି ସୀତାକାନ୍ତଙ୍କ କବିତାରେ ଏକ ଦାର୍ଶନିକ ମନନଶୀଳତା ପ୍ରକାଶ ପାଇଛି। ସମୟର ଏଇ କ୍ଷିପ୍ରଗତି ପ୍ରତି କବି ଦୀପକ ମିଶ୍ର ନିଜ କାବ୍ୟ ପ୍ରତିକ୍ରିୟା ପ୍ରକାଶ କରି କହିଛନ୍ତି:— "ସମୟ କେଉଁଠୁ ଆସେ ଏବଂ ଯାଏ ବି କେଉଁଠି କିଏ ଜାଣେ ଯଦି ବା/ ସମୟ ନେଇ ପିଲା ଖେଳେ, ବୁଢ଼ା ଖେଳେ, ଖେଳର ପ୍ରହରୀ/ ଯେ ଜଗିଛି ସମୟକୁ ଅତି ଦୃଢ଼ କରି।" (କେତୋଟି ଧର୍ମବକଙ୍କ କଥା)" ଅଣାୟତ ଏଇ ସମୟର ମହାସତ୍ତାକୁ ବହୁ ଭାବରେ ଉପଲବ୍ଧି କରିଛନ୍ତି କବିମାନେ। କବି ଜଗନ୍ନାଥ ପ୍ରସାଦ ଦାସ ସମୟର ସର୍ବବ୍ୟାପକତାକୁ ସ୍ୱୀକାର କରି କହନ୍ତି: *"କିଏ ଜାଣିଛି କେତେ ସମୟ ନେଇ/ସନାତନ କାଳ ଅନନ୍ତ କାଳ/କେତେକ୍ଷଣର ସମନ୍ୱୟରେ ଚିରନ୍ତନ/ମୁହୂର୍ତ୍ତରେ, ଦିନ ମାସ ବର୍ଷ ବର୍ଷରେ, ଦଣ୍ଡଂଧିରେ ନା ଶତାବ୍ଦୀରେ/ସମୟର ପରିମାପ କ'ଣ? /ଲିଚା ବିଲିଚା ନା ଅସଂଖ୍ୟ ତ୍ରିକାଳ?/ ମହାକାଳକୁ ବନ୍ଦ କରିହେବ ଷ୍ଟପ୍ ୱାଚ୍‌ରେ ନା ଇତିହାସରେ?"* (କିଏ ଜାଣିଛି କେତେ ସମୟ, ଯେ ଯାହାର ନିର୍ଜନତା)

କାଳର ବିନ୍ଦୁ ସୂର୍ଯ୍ୟକୁ ଧରି ରଖିଲାପରି ନଶ୍ୱର ନିମିଷକ ମଧ୍ୟରେ ଅକ୍ଷର ଚିରନ୍ତନକୁ ଧରି ରଖିବାକୁ କବି ପ୍ରତିଭା ଶତପଥୀ ପ୍ରୟାସ କରନ୍ତି। ତାଙ୍କ କାବ୍ୟଗ୍ରନ୍ଥ 'ନିମିଷେ ଅକ୍ଷର' (୧୯୮୪)ର ପୃଷ୍ଠବନ୍ଧରେ କୁହନ୍ତି: "ତଥାପି କହିବି ମୁହୂର୍ତ୍ତ ଚିରନ୍ତନ, ଅମଳିନ, ଅକ୍ଷର। ହିଁ ଗୋଟିଏ ମୁହୂର୍ତ୍ତର ସ୍ୱାନୁଭବ ସମଗ୍ର ଜୀବନର ପରିପୂର୍ଣ୍ଣତାର ସମକକ୍ଷ ହୋଇପାରେ— ହୋଇପାରେବି ସମଗ୍ର ଜୀବନର ସମ୍ଭାବନାଠୁଁ ଅଧିକ।" ତେଣୁ କୁନ୍ତଳାକୁମାରୀଙ୍କ ପରି ସେ ଆଶାବାଦୀ ସ୍ୱରରେ ଉଚ୍ଚାରଣ କରିଛନ୍ତି: *"ଅପରିଚିତ ସେ ଭବିଷ୍ୟର ପ୍ରାନ୍ତର ଭିତରେ/ଉଜ୍ଜଳ ବର୍ତ୍ତମାନର ବିନ୍ଦୁଟିକୁ/ଦେଖୁଛତ, ତା ଉପରେ ଅଭିଷିକ୍ତ/ ସବୁଜ ସରସ ଆନ୍ତରିକତାକୁ।"* ('ଜାଣିନଥିଲିତ')

ପୁଣି ନିଜେ ନିଜର ବିରୋଧାଭାସ ଭାବେ ଭବିଷ୍ୟତ ସମୟଠାରେ କୌଣସି ସମ୍ଭାବନା ନଥିବାର ଅନୁଭବ ପ୍ରକାଶ କରନ୍ତି। *"କୁଢ଼ କୁଢ଼ ଅନ୍ଧାରର ବୋଝ ବୋହି/ ଚାଲିଥିବା ସମୟର ଆଉ କେଉଁ ସମ୍ଭାବନା ଅଛି?"* (ପାଳଭୂତ)

ମିନିଟ୍ ମିନିଟ୍ କରି ମାପୁଥିବା ସମୟ କେତେବେଳେ ମଣିଷର ଅସତର୍କତାରେ ଖସିଯାଏ। ଜୀବନ ସାରା ସ୍କୁଲବେଳ, ଖାଇବା ବେଳ, ବସ୍ ଯିବାବେଳ ମାପୁଥିବା ମଣିଷକୁ ଠକିଦେଇ ସମୟ ନିଜ ବାଟରେ ବହି ଯାଉଥାଏ— ଖଣ୍ଡେ ସଳିତା ପରି ମଣିଷର ବୟସ ସନ୍ତାପ ନିଆଁରେ ଜଳୁଥାଏ।

ସାଂପ୍ରତିକ କବିତାରେ ସମୟ ପ୍ରାୟ ସର୍ବତ୍ର ଜ୍ୱଳନ ଓ ଯନ୍ତ୍ରଣାର ପ୍ରଦୀପ୍ତ ବହ୍ନିଶିଖା ଭାବେ ଆତ୍ମ ପ୍ରକାଶ କରିଛି। ତେଣୁ ଗୁରୁପ୍ରସାଦ *"ଭୟ ଆଉ ପାପ ମିଶି ଏ ସମୟ ଅନ୍ତସତ୍ତ୍ୱା/ ଜୀବନର ଭଗ୍ନାଂଶ କେବଳ"* ବୋଲି କହିଲାବେଳେ କବି ସୌଭାଗ୍ୟ ମିଶ୍ର କୁହନ୍ତି *"ସମୟର ଚିତ୍କାର ଶୁଣି ଶୁଣି/ଯେତିକି ଯେତିକି ନିଃସ୍ୱ ହୋଇ ଯାଉଛି/ ସେତିକି ସେତିକି ଶୁଭି ଯାଉଛି ପଛରୁ କୋଳାହଳ/ ମୁହଁ ଶୁଖେଇ ଦେଖୁଛି/ ନାନା ରଙ୍ଗ ବୋଳି ହୋଇ ମୂର୍ତ୍ତିରେ ଦେହରେ/ ଠିଆ ହୋଇଛି ସମୁଦ୍ର।"* (ସିଂହାବଲୋକନ - ମଣିକର୍ଣ୍ଣିକା)

ସମୟର ସର୍ବବ୍ୟାପୀ ହସ୍ତ-ପ୍ରସାରଣଠାରୁ ମଣିଷର ନିଷ୍କୃତି ନାହିଁ। ଏ ସମୟ କେବେ ମଣିଷ ପାଇଁ ସରୁ ପାଣିଧାରଟିଏ ପରି ନୀରବରେ ପ୍ରବାହିତ ହୋଇଯାଏ ତ କେବେ ମୂଷଳ ବର୍ଷାଧାର ପରି ଅଜାଡ଼ି ହୋଇପଡ଼େ। କେବେ ଚିତ୍ରିତ ପ୍ରଜାପତିଟିଏ ପରି ଲୋଭନୀୟ ତ କେବେ ସର୍କସର ଜୋକର ପରି ଅସହାୟ; ପଳାୟମାନ ସମୟ କେବେ ହାତୀ ଖୋଜ ପରି ମନ୍ଥର ତ କେବେ ସିଂହର ଗର୍ଜନ ପରି ଭୟଙ୍କର। ସୌଭାଗ୍ୟଙ୍କ କବିତାରେ ସମୟର ଏଇ ପ୍ରତୀକପୂର୍ଣ୍ଣ ମର୍ମବୋଧ ଅତି ଭାବାତ୍ମକ ଓ ଆକର୍ଷଣୀୟ। ('ଖରା ସାଙ୍ଗରେ କିଛି ସମୟ କଥାବାର୍ତ୍ତା'- ବଜ୍ରଯାନ)। କବି ଦୀପକ ମିଶ୍ର କିନ୍ତୁ ସମୟକୁ ଜୀବନଠାରୁ ଭିନ୍ନ ଭାବେ ଉପଲବ୍ଧକରିଛନ୍ତି। ତାଙ୍କ ମତରେ: *"ଜୀବନ ସମୟ ନୁହେଁ/ ସମୟ ଜୀବନ ନୁହେଁ/ ତେଣୁ କିଛି ବ୍ୟତିକ୍ରମ ଆସିପାରେ ହତାଶା ଓ ବସନ୍ତ ସହିତ/ କୃତାନ୍ତର କଳା ହାତ ପରି ନୁହେଁ, ବା ଫୁଲର ଝାଡ଼େଣୀ ହୋଇ/ ଜୀବନ ବି ଚାଲିପାରେ ଜଙ୍ଗଲ ବା ବସ୍ତିର ମଝିରେ।"* 'କତଚା ବହୁ ବ୍ୟତିକ୍ରମର'

ପୁନଶ୍ଚ ସେ ସମୟଠାରେ ସର୍ବତ୍ର ମୃତ୍ୟୁର ତାଣ୍ଡବ ନାଚକୁ ହିଁ ଉପଲବ୍ଧି କରନ୍ତି ଓ ଉଚ୍ଚାରଣ କରନ୍ତି– *"ସମୟକୁ ଫେଣ୍ଟି ଦିଅ ପ୍ରାୟ ଉଲଙ୍ଗ ନାରୀର ଛବି ଥିବା ତାସ ମୁଠାପରି/ ସମୟକୁ ବାଣ୍ଟିଦିଅ ତ୍ରିଯାମାର ଗାର ଟାଣି ଟାଣି/ ସତ୍ ଚିତ୍ ଓ ଆନନ୍ଦକୁ ଧରି/ ସବୁଠି ମୃତ୍ୟୁର ନାଚ ହେଉ ତା'ର ତାଣ୍ଡବ।"* (ସବୁଠି ମୃତ୍ୟୁର ଖେଳ-ଧୂଳିର ସିଂହାସନ)

କବି ସୀତାକାନ୍ତ ଚମତ୍କାର ଏକ ରୂପକଳ୍ପନା ମଧ୍ୟରେ ସମୟକୁ ଉଦାସୀନ ଛୋଟ ଝିଅଟିଏ ସହିତ ତୁଳନା କରିଛନ୍ତି, ଯେକି ଅତି ଯତ୍ନରେ ସିଲଟରେ ଲେଖାଯାଇଥିବା ଅକ୍ଷରଗୁଡ଼ିକୁ ବାରମ୍ବାର ପୋଛି ଦେଉଥାଏ। (*'ଅନ୍ୟ ସମୟ'*- ଶବ୍ଦର ଆକାଶ) କମ୍ କାରୁଣ୍ୟ ନାହିଁ ଏଇ ପରିକଳ୍ପନାରେ। ଏଇ ଉଦାସୀନ ଚପଳ ସମୟ ମଣିଷ ଜୀବନ ପାଇଁ କମ୍ ନିଷ୍ଠୁର ନୁହେଁ। ତେଣୁ ସାମ୍ପ୍ରତିକ କବିତାରେ ସମୟ ପ୍ରତି କବିର ପ୍ରତିକ୍ରିୟା ବହୁସ୍ରାବୀ; କେତେବେଳେ ଶୋକାବହ ଆତଙ୍କପ୍ରଦ ତ କେତେବେଳେ ଏକାନ୍ତ ଉତ୍ପୀଡ଼କ। ତେଣୁ ତା' ପ୍ରତି ମଣିଷର ବିଶ୍ୱାସ ନାହିଁ, ବରଂ ଏକପ୍ରକାର ପ୍ରତ୍ୟୟ-ହୀନତା ମଣିଷକୁ ସମୟଠାରୁ ବିଚ୍ଛିନ୍ନ କରି ଦେଉଛି। ରମାକାନ୍ତ ତାଙ୍କର ବହୁ ପୂର୍ବ କବିତାରେ ଯେଉଁ ସମୟର ପରିକଳ୍ପନା କରିଥିଲେ- *"କେଉଁଠି ଅପରାହ୍ନ ଧୈର୍ଯ୍ୟଶାଳୀ ପାନବାଲା ପରି ବସିଛି"* ('ସେ ସକଳ ମୃତ୍ୟୁ'- କେତେଦିନର) ତ କେଉଁଠି *'ହତାଶ ଓ ଏକାକିନୀ ପତ୍ନୀ ପରି ଖୋଲି ଦେଇ ଫାଶ ତା' ଯୁଦ୍ଧାର/ ସଂଧ୍ୟା ବସିଅଛି'* ('ସ୍ୱର୍ଗାରୋହଣ'- କେତେଦିନର)। ଆଧୁନିକ ମଣିଷର ନିଃସଂଗତାବୋଧ ଓ ତହିଁରୁ ଉଦ୍ଭୂତ ବିଚ୍ଛିନ୍ନତାବୋଧ ଏଇ ସମୟର ଦଂଶନରେ ହିଁ ଜର୍ଜରିତ

ହେଉଛି । କାରଣ ସମୟ (କାଳ) ପ୍ରତି ଥିବା ମଣିଷର ପାରମ୍ପରିକ ପ୍ରତ୍ୟୟ ତୁଟି ଯାଇଛି । ସତେ ଯେପରି ଏ ସମୟ ମଣିଷର ମାଂସ, ହାଡ଼, ଚେତନା ଓ ଆତ୍ମାକୁ ଟାଣି ଭିଡ଼ି ଏକାକାର କରିଦେଉଛି । ରାଜେନ୍ଦ୍ର କିଶୋର ପଣ୍ଡାଙ୍କ ଭାଷାରେ-

*"ସମୟର ଯାଉଁଳି ପଲଙ୍କରେ ଭଲ ପାଇବାର ସମୟ*
*ଖଣ୍ଡ ଖଣ୍ଡ ଲୁହା ଖଣ୍ଡ ଖଣ୍ଡ ଚୁମ୍ବକରେ*
*ଗୁଞ୍ଜି ଦେଇ ଟାଣି ଭିଡ଼ି ନଚାଇ ମିଶାଇ ପକାଇଲା*
*ତମର ମୋର ମାଂସକୁ, ହାଡ଼କୁ, ମଜ୍ଜାକୁ,*
*ତମର ମୋର ଚେତନାକୁ, ନିଭୃତ ଆତ୍ମାକୁ"* ('ତମେ ମୋର ବିଦାୟ'- ଅନ୍ୟା)

କବି ସୌରୀନ୍ଦ୍ର ବାରିକ ତାଙ୍କ କବିତାରେ ସମୟକୁ ଖଣ୍ଡିଆ ଭୂତ ଭାବେ ପରିକଳ୍ପନା କରିଛନ୍ତି- ଯେଉଁ ସମୟକି ଖୁବ୍‌ହେଲେ ନାଗଫେଣି କଣ୍ଟାରେ ଫୁଲ ଫୁଟାଇପାରେ । ଅର୍ଥାତ୍ ସେ ଫୁଲ ତୋଳିବାକୁ କେହି ହୁଏତ ପ୍ରୟାସ କରିବେ ନାହିଁ ।

*"ସମୟର ଏ ଖଣ୍ଡିଆ ଭୂତରେ*
*ନାଗଫେଣୀ ବର୍ତ୍ତମାନ କୁସୁମିତ ହୁଏ,*
*ଲୋମା, ଲାମ୍ଫଗୋ,*
*ଆଉ ମିଛବାଗରେଇ ଖାଲି ସ୍ୱପ୍ନ ଦେଖୁହୁଏ* (ସେଦିନ- ଆକାଶ ପରି ନିବିଡ଼) ।

ଏଇ ବର୍ତ୍ତମାନ ସମୟ ହିଁ କବି ପାଇଁ ସତ୍ୟ । ସେ କାହିଁକି ଅତୀତ ବା ଭବିଷ୍ୟତ ପାଇଁ ବିବ୍ରତ ହେବ? ସମୟ ସହିତ ଏକାକାର ହୋଇ ବରଂ ତାକୁ କାବ୍ୟ ନାୟକ ଆକଣ୍ଠ ଉପଭୋଗ କରିବ– ତା' ପାଇଁ ଏ ସମୟ ରବିବାର ଛୁଟିଦିନ ପରି ଉପଭୋଗ୍ୟ । ଗଳଦ୍‌ଘର୍ମ ଧାଁ ଧଉଡ଼ ନ ଥିବ, ପ୍ରତିଯୋଗିତା ନ ଥିବ ।

କବି ସୀତାକାନ୍ତ ତାଙ୍କ ଆଦ୍ୟ କବି ଜୀବନର ଗୋଟିଏ କବିତାରେ ସମୟକୁ ନାନାବାୟା ଗୀତ ଗାଇ ଧୀରେ ଧୀରେ ପିଠି ଆପୁଡ଼େଇ ଶୋଇଦେବା କଥା କଳ୍ପନା କରିଥିଲେ । ଅଥଚ ସେ ସମୟ ପରେ ଆଖି ମଳି ଭୂତ ପରି ପୁଣି କାବ୍ୟ ନାୟକ ଆଗରେ ଠିଆ ହୋଇଯାଉଥିଲା । ତା'ର କବଳରୁ ଯେପରି ନିସ୍ତାର ନାହିଁ ('ଗୋଟିଏ ସନେଟ୍'- ଦୀପ୍ତି ଓ ଦ୍ୟୁତି) । ଠିକ୍ ସେହିପରି କବି ଶରତଚନ୍ଦ୍ର ପ୍ରଧାନ ସମୟପ୍ରତି ନିଜର ଦରଦ ପ୍ରକାଶ କରି କହନ୍ତି-

*"ମୁଁ କହିଲିରେ ସମୟ ଦେବି ପେଁକାଳି*
*ତୋ ପାଇଁ ଶେଯାଇଦେବି ହଂସୁଲି ଚଳପ*
*ତୋ ପାଇ ଗଢ଼ାଇ ଦେବି ରତନ ପଲଙ୍କ"* ('ସମୟପ୍ରତି'- ଉଚ୍ଚୈଶ୍ରବା) ।

ଅଥଚ ସେ ସମୟ ଧରାଦିଏ ନାହିଁ । ତା'ର ନିରପେକ୍ଷ ପ୍ରବାହରେ ସେ ସ୍ୱତଃ ଅପସାରିତ ହୋଇଯାଏ । କବି ନୃସିଂହ କୁମାର ରଥ ତାଙ୍କ କାବ୍ୟ ଚେତନାରେ ସର୍ବତ୍ର ସେଇ ଅତିକ୍ରାନ୍ତ ସମୟର ଛାଇକୁ ଉପଲବ୍ଧି କରନ୍ତି । ଯେତେସବୁ ପ୍ରତାରଣା, ଦୂରତା ଓ ସମୟକୁ ଫାଙ୍କିଦେବାର ଛଳନା ସବୁ ଘଷରା ରେକର୍ଡ ଗୀତ ପରି କିମ୍ବା ମିଛି ମିଛି ସ୍ୱପ୍ନଦେଖା କରି ଅଳୀକ- ଅଥଚ ସମୟ ଆଖିର ପ୍ରହରୀ ଠାରୁ କାହାରି ନିଷ୍କୃତି ନାହିଁ । ସମୟର ଦଂଶନ ଓ ସମୟାନ୍ତରର ଉଚ୍ଚାଟିତ ଆହ୍ୱାନକୁ ସେ ସବୁଠାରେ ଶୁଣିବାକୁ ପାଆନ୍ତି । ('ସମୟ ସମୟାନ୍ତର')

ଆରାମ ଦାୟକ କର୍ମଭାବେ ଗ୍ରହଣ କରିନେଇଛନ୍ତି ଓ ମୁର୍ଘାରଙ୍କ ଚତୁର୍ଦ୍ଦିଗରେ ଅନିର୍ବଚନୀୟ ସୌନ୍ଦର୍ଯ୍ୟର ସନ୍ଧାନ କରିଛନ୍ତି। ମୃତ୍ୟୁ ଅନ୍ୟାନ୍ୟ କାମ ପରି ଏକ ସାଧାରଣ କାମ ମାତ୍ର। ତେଣୁ ସେଥିପାଇଁ ଅଯଥା ଦୁଶ୍ଚିନ୍ତା ବ୍ୟସ୍ତତା ଓ ଆତଙ୍କ କାହିଁକି? *"ଅନ୍ୟ କେତେ କାମପରି ମୃତ୍ୟୁ ଏକ କାମ/ ସେଥିପାଇଁ ପଛଘୁଞ୍ଚା ନାହିଁ କିମ୍ବା ଅଯଥା ବ୍ୟସ୍ତତା ନାହିଁ/ ବା ଅପରିପକ୍ୱ ବିମର୍ଷତା ନାହିଁ।"* (ଉଜ୍ଜ୍ୱଳ ଭବିଷ୍ୟତ)

ମୃତ୍ୟୁ ମଧ୍ୟରେ କବି ରମାକାନ୍ତ ହିଁ କେବଳ ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ପାଇପାରନ୍ତି। ତେଣୁ ମରିବାକୁ ଏକ ଆରାମଦାୟକ କର୍ମଭାବେ ଗ୍ରହଣ କରିବାରେ ତାଙ୍କର କୁଣ୍ଠା ନାହିଁ।

*"ଏଠାରେ ମରିବା କିନ୍ତୁ ବହୁତ ଆରାମ*
*ମୁର୍ଘାରଙ୍କ ଚତୁର୍ଦ୍ଦିଗେ ଅନିର୍ବଚନୀୟ*
*ପ୍ରାକୃତିକ ସୌନ୍ଦର୍ଯ୍ୟ, ନାନାଦି ପକ୍ଷୀଙ୍କ*
*କାକଳିରେ ମୁଖରିତ ଗଗନ ପବନ।"* (ଶାଗୁଣା)

କବି ସୀତାକାନ୍ତ ମୃତ୍ୟୁକୁ ଚିରଈପ୍ସିତତମ ନବୀନ ନୀରଦ ଶ୍ୟାମ ଭାବେ ପରିକଳ୍ପନା କରିଛନ୍ତି। ମୃତ୍ୟୁ ପରେ କାବ୍ୟନାୟିକାକୁ ସ୍ୱର୍ଗର ଦୂତମାନେ ରଥରେବସାଇ ବାହି ନେବେ, ସତେ ଯେପରି ହଳଦି କାଠୁଆ କୋଥଳି ଓ କାଠପେଡ଼ି ସହିତ ନୂଆବୋହୂର ଏହା ଶବାରିରେ ଶାଶୁ ଘରକୁ ଯାତ୍ରା।

*"ଦୁନ୍ଦୁଭିର ନାଦ ଶୁଭେ ସତେଅବା କରୁଣ ମହୁରୀ*
*କେତେଦୂର ବାଟ ସ୍ୱର୍ଗ*
*ପଛରେ ରହିବ ପଡ଼ି ବାପଘର*
*ଚିହ୍ନା ଚୋଟାବାଡ଼ି।"* (ସନ୍ୟାସିନୀ)

କବି ସୀତାକାନ୍ତ ସମୁଦ୍ରକୁ ମୃତ୍ୟୁର ରୂପାନ୍ତର ଭାବେ ଗ୍ରହଣ କରି କେତେ ଆନ୍ତରିକ ଭାବେ ତା' ସହିତ ଆଳାପ ଓ ଜୀବନର ହିସାବ ନିକାଶ କରି ବସନ୍ତି। ସେ ମୃତ୍ୟୁରୂପୀ ସମୁଦ୍ରର କୁଆଁ କୁଆଁ ରାବ କେତେବେଳେ ଶୁଣନ୍ତିତ/ କେତେବେଳେ ହାତଗୋଡ଼ ଛାଟି କାନ୍ଦୁଥିବାର ଲକ୍ଷ୍ୟ କରନ୍ତି। ସେ ପୁଣି ପ୍ରତିବେଶୀଟିଏ ପରି କେତେବେଳେ ଏକାନ୍ତ ପରିଚିତ ମନେହୁଏତ/ କେତେବେଳେ ଆଜୀବନ ମୁଣ୍ଡପୋତି ଠିଆ ହେବାର ବିରକ୍ତିକର ସ୍ଥିତିରୁ ସେ ମୁକ୍ତି ଦିଏ। ସମୁଦ୍ର ତାଙ୍କ ପାଇଁ ଜନ୍ମ, ଜୀବନ ଓ ମୃତ୍ୟୁର ବିଭିନ୍ନ ରୂପ ନେଇ ପ୍ରତିଭାତ ହୁଏ।

ମଣିଷଟିଏ ମୃତ୍ୟୁ ଦ୍ୱାରା କବଳିତ ହେ .ା କେଡ଼େ ସହଜ, ସ୍ୱାଭାବିକ ଓ ଆତ୍ମୀୟ ଘଟଣାଟିଏ। ବିଦାୟ ମୁହୂର୍ତ୍ତରେ ମୃତ୍ୟୁ ଏକାନ୍ତ ଆତ୍ମୀୟ ଭଳି ଏକ ନୂତନ ଇଲାକାକୁ ଡାକିନିଏ। କାଳିସୀ ପରି ଉଚ୍ଚାଟିତ ହେଉଥାଏ ପାଦ ଓ ଦେହ। ପରିବାର, ଜ୍ଞାତି ପରିଜନଙ୍କ ସ୍ନେହର ରଜ୍ଜୁ ସେତେବେଳେ ଆଉ ବାନ୍ଧି ରଖିପାରିବକି?

*"କାଳିସୀ ନାଚିଲା ପରି ଗୋଡ଼ ଖାଲି ପଡୁଥାଏ*
*କୋଉଠି ଭାଇ ଓ ବନ୍ଧୁ କୋଉଠି ସେ ଘର*
*ଫେରିବାକୁ ପୁରୁଣା ନୀଳ ଆକାଶ ରାଜପଥ*
*ଚାରିଆଡ଼େ ମେଘ ପଲ ପଲ।"* (ବିଜୟ ମୁହୂର୍ତ୍ତ)

ବିଦାୟମୁହୂର୍ତ୍ତକୁ ବିଜୟମୁହୂର୍ତ୍ତ ଭାବେ ପରିକଳ୍ପନା କରିବାରେ ସୀତାକାନ୍ତଙ୍କ କାବ୍ୟମନନ ରମାକାନ୍ତଙ୍କ ଉଜ୍ଜ୍ୱଳ ଭବିଷ୍ୟତ ପରିକଳ୍ପନା ସହିତ ଭାବସାମ୍ୟ ରକ୍ଷା କରେ। ଏଠି ଆଉ ମୃତ୍ୟୁ ପ୍ରତି ଭୀତି ନାହିଁ। ବରଂ ଅଛି ତାକୁ ବରଣ କରିନେବାର ଏକ ଉଚ୍ଚାଟିତ ଆଗ୍ରହ। ମୃତ୍ୟୁରୂପୀ ଶ୍ୟାମର ମୁରଲୀଧ୍ୱନି ମଣିଷଟିକୁ ଏତେ ଉଚ୍ଚାଟିତ କରେ ଯେ ପିଲାଝିଲାଙ୍କ ମାୟାମମତା ଓ ସମସ୍ତ ପାର୍ଥିବ ଆକର୍ଷଣକୁ ଛାଡ଼ି ସେ ଆରପାରିକି ଯିବାକୁ ଗୋଡ଼ ଟେକି ବସେ। ରମାକାନ୍ତ ମୃତ୍ୟୁକୁ ପରମ ଅତିଥି ଭାବେ ପରିକଳ୍ପନା କରି ତା'ର ସତ୍କାର କରନ୍ତି ଓ ପୁଅକୁ ପଠାନ୍ତି ଏଇ ବରେଣ୍ୟ ଅତିଥିଟିକୁ ବାଟେଇ ନେଇ ଆସିବାକୁ। ସୀତାକାନ୍ତ କିନ୍ତୁ ଏଇ ଅତିଥି ପାଇଁ ରାସ୍ତାର ଶେଷ ପ୍ରାନ୍ତ ବଗିଚାରେ ଅପେକ୍ଷା କରି ବସନ୍ତି। ସେ କାଳେ ଟ୍ରେନରୁ ଓହ୍ଲେଇ ରିକ୍ସାରେ ଚଢ଼ି ଆସିବ ଓ ଫାଟକ ପାଖରେ ପହଞ୍ଚି ଠିକଣା ପଚାରିବ। ଏଇ ଅତିଥି ସହିତ ଫେରିବାକୁ ସମସ୍ତ ପ୍ରସ୍ତୁତି ସରିଥିବ। ତେଣୁ ସାମାନ୍ୟ ଉପଚାର ପରେ ବ୍ୟକ୍ତିଟି ବାହାରି ପଡ଼ିବ ନିର୍ବିଘ୍ନରେ ଓ ନିଶ୍ଚିନ୍ତ ଭାବେ।

ଏକାନ୍ତ ଜୀବନବାଦୀ ଅଗ୍ରଜ କବି ଗୁରୁପ୍ରସାଦ ମଧ୍ୟ ମୃତ୍ୟୁ ସମ୍ପର୍କରେ ଯେଉଁ ବିରୋଧାଭାସ ରଖିଛନ୍ତି, ତାହା ମୃତ୍ୟୁ ପ୍ରତି ତାଙ୍କ ଅବମାନ୍ୟତାର ସୂଚନା ବହନ କରେ।

*''ସେ ମୃତ୍ୟୁର ଶୋଭା ଠାରୁ ବହୁ ଦୂର*
*ଏ ପୃଥିବୀ ଧୂସରପାଣ୍ଡୁର*
*ମହାଶୟ, ଆଜି ତେଣୁ ଏ ମୃତ୍ୟୁରେ କୌତୂହଳ ନାହିଁ।*
*ଆଶା ନାହିଁ, ଈପ୍ସା ନାହିଁ*
*ଏ ମୃତ୍ୟୁ କେବଳ ଠିକ୍ ସହରର ସବୁ ଫ୍ୟୁଜ୍ ଜଳିଗଲା ପରି*
*ଏ ମୃତ୍ୟୁ ବା କାହାପାଇଁ ଚାକିରିରୁ ଅକସ୍ମାତ୍ ଛୁଟି ନେଲାପରି*
*ମହାଶୟ, ମୁଁ ଯଦି ପାରନ୍ତି ରଖି ଆପଣଙ୍କ 'ଅମୃତ' ଓ 'ଶିଶିର'ର ଆଶା।''*

ଶିଶିର ବିନ୍ଦୁ ପରି କ୍ଷଣସ୍ଥାୟୀ ମଣିଷ ଜୀବନ ପାଇଁ ଅମୃତ ଆଶା କେବେ ଚରିତାର୍ଥ ହୋଇପାରିବନି। ମୃତ୍ୟୁକୁ ସାଦର କୋଳାଗ୍ରତ କରିନେବା ବ୍ୟତୀତ ମଣିଷର ଆଉ କି ଚାରା ବା ଅଛି? ତେଣୁ ମୃତ୍ୟୁ ପାଇଁ ଅଯଥା ବ୍ୟସ୍ତତା କାହିଁକି? ମୃତ୍ୟୁ ଲୋକ ଶୋଭାବନ୍ତ ଓ ସୁନ୍ଦର- ବରଂ ଏ ପୃଥିବୀ ଧୂସର ଓ ପାଣ୍ଡୁର।

କବି ଦୀପକ ମିଶ୍ର ମୃତ୍ୟୁକୁ ନିରାପଦ ରମଣୀୟ ସ୍ଥାନ ଭାବେ ପରିକଳ୍ପନା କରନ୍ତି ଓ ରମଣୀର କୋଳ ପରି ସେଠାରୁ ପ୍ରସ୍ଥାନ ପାଇଁ ତାଙ୍କ ମନ ଚାହେଁନାହିଁ। ପୁଣି ମୃତ୍ୟୁ ତାଙ୍କ ପାଇଁ ଏକ ସୁସଜ୍ଜିତ ପ୍ରଥମ ଶ୍ରେଣୀ ବିଶ୍ରାମାଗାର। ସେଠାରେ ଆମର ଯାତ୍ରୀ ଦେହଟି ମୃତ୍ୟୁର ମଳୟ ସ୍ପର୍ଶ ପାଇଁ ଅପେକ୍ଷାରତ ହୋଇ ରହିଥାଏ। ମୃତ୍ୟୁ ତାଙ୍କ ପାଇଁ ପ୍ରିୟତମ ଦୋସର। ତାକୁ କବି ନିଜ ଶେଯରେ ତକିଆ ଦେଇ ଶୋଇ ପକାନ୍ତି। ସେ ଏକାନ୍ତ ବରେଣ୍ୟ ଅତିଥି, ଭୟର କାରଣ ନାହିଁ। କାଳେ ତା'ର ଚର୍ଚ୍ଚାରେ ତ୍ରୁଟି ଘଟିବ, ସେଥିପାଇଁ ତାଙ୍କ ମନରେ ଘୋର ଆଶଙ୍କା। ସବୁ ଅପୂର୍ଣ୍ଣତା, ଅଚରିତାର୍ଥତା, ଅକୁଳାନପଣିଆ ଓ ହାହାକାର- ସବୁର ପରିସମାପ୍ତି ଘଟେ ମୃତ୍ୟୁର ସ୍ପର୍ଶରେ। ପୁଣି କେଉଁଠି ମୃତ୍ୟୁ ବିଶୁଦ୍ଧ ବିଭୂତି ପରି ଲୋକମାନଙ୍କ କାନ୍ଧରେ ଝରି ପଡୁଥିବାର ସେ ଦେଖନ୍ତି। ମୃତ୍ୟୁକୁ ସ୍ପର୍ଶକଲେ ମଣିଷ ସାବାଳକ ଓ ଅଭିଜ୍ଞ ହୁଏ ବୋଲି ତାଙ୍କର ଅନନ୍ୟ ପରିକଳ୍ପନା। ମୃତ୍ୟୁ ସହିତ

ସମ୍ପର୍କ ତିକ୍ତ ନୁହେଁ- ବରଂ ଏକାନ୍ତ ରାଗାନୁଗ। କବି ସ୍ପଷ୍ଟ ଘୋଷଣା କରନ୍ତି- *"ମୃତ୍ୟୁ ଚେତନା ମୋ ଅଭିବ୍ୟକ୍ତି ଓ ଅନୁଭୂତିର/ ଏକ ପ୍ରତ୍ୟକ୍ଷ ରାଗାନୁଗାର ପର୍ଯ୍ୟାୟ/ ଏ ଆଲିଙ୍ଗନ ନିଜ ସହିତ ନିଜର।"* (ମୃତ୍ୟୁ ଚେତନାର ମୃତ୍ୟୁ)

କବି ଶ୍ରୀମତୀ ପ୍ରତିଭା ଶତପଥୀଙ୍କ କାବ୍ୟଚେତନାରେ ମୃତ୍ୟୁ ଦୁର୍ଦ୍ଦାନ୍ତ ପ୍ରେମିକଟିଏ ପରି ପଛେ ପଛେ ଲାଗିଥାଏ। ଶେଷକୁ ଗାଁ ଗଣ୍ଡା ଟପି କେଉଁ ଅଜଣା ମୂଲକରେ ସେ ପ୍ରେମିକାକୁ ଲୁଚେଇ ଦିଏ। କେତେ ଅବିଚାର, ଗ୍ଲାନି ଓ ଯନ୍ତ୍ରଣାର ପରିସମାପ୍ତି ଘଟେ ସେଇ ପରମ ପ୍ରେମିକର ସାନ୍ନିଧ୍ୟରେ। ଅତି ଦୁର୍ଦ୍ଦାନ୍ତ ତା'ର ପ୍ରେମ, ଘନିଷ୍ଠ ତାର ଆଶ୍ଲେଷ। ଏପରିକି ଅତି ପ୍ରିୟ ସ୍ୱାମୀ ଓ ସନ୍ତାନମାନେ ମଧ୍ୟ ତା'ପ୍ରେମ ସହିତ ସମସ୍ପର୍ଦ୍ଧୀ ହୋଇପାରନ୍ତି ନାହିଁ ('ଦୁର୍ଦ୍ଦାନ୍ତ ପ୍ରେମିକ')। ପୁଣି କେବେ ବା ସବା ସାନ ପୁଅର ପ୍ରସୂତି- ଆନନ୍ଦ ନେଇ ମୃତ୍ୟୁକୁ ଗେହ୍ଲା କରିବାକୁ ଦେହ ଓ ମନ ଆଗଭର ହୋଇଉଠେ ଓ ତା'କୁ କୋଳାଗ୍ରତ କରୁ କରୁ ଜରାଜୀର୍ଣ୍ଣ ଦେହର ସେତୁଟି ଭାଙ୍ଗିପଡ଼େ। "ତୁ ଆସିବୁ ତୋ ସୁନ୍ଦର ମୁହଁ/ ଶୂନ୍ୟରେ ଉଠିବ ଝଲି/ ପୂନେଇଁ ଚାନ୍ଦଟି ପରି/ କୋଳାଗ୍ରତ କରିବାକୁ ଫୁଲି ଉଠୁ ଉଠୁ/ ପାଦ ଦେବା ଆଗରୁ ତୁ ଜୀର୍ଣ୍ଣ ଏଇ ସେତୁ/ ଭାଙ୍ଗି ପଡ଼ି ସାରିଥିବ ସାମ୍ନାରେ ତୋହର।" (ସବା ସାନପୁଅ)

କବି କମଳାକାନ୍ତ ଲେଙ୍କା ନିର୍ଜନ ନିଃସଂଗ ପ୍ରତିଶ୍ରୁତିହୀନ ଜୀବନ ପାଇଁ ମୃତ୍ୟୁକୁ ନୂତନ ବସନ୍ତ ଆଗମନ ଭାବେ ପରିକଳ୍ପନା କରନ୍ତି। ତାଙ୍କ ମତରେ ମୃତ୍ୟୁପରି ପରମ ଆତ୍ମୀୟ କେହିନାହିଁ।

*"ନିଜ ନିଜ ସଭାର ତାଳରେ*
*ମୃତ୍ୟୁ ଭଳି ଆତ୍ମୀୟ କିଏ ଅଛି*
*ନାନାବାୟା ଗୀତର ତାଳରେ।"* (ମ୍ଲେଚ୍ଛ)

ଜୀବନର ଏଇ ଚରମ ସତ୍ୟ ଓ ଅନ୍ତିମ ପରିଣତି ମୃତ୍ୟୁ ପାଇଁ ସାମ୍ପ୍ରତିକ ଓଡ଼ିଆ କବିତା ଆଜି ବହୁବାଚୀ। କବି ସୌଭାଗ୍ୟ ମିଶ୍ର ମୃତ୍ୟୁର ଏଇ ନିଃଶବ୍ଦ ପଦପାତକୁ ଲକ୍ଷ୍ୟକରି କହିଛନ୍ତି- *"ସେଦିନ ଯିଏ ଦୁର୍ଗର ଚୋରା ବାଟ ଦେଇଆସି ମହାର୍ଘ ଆଲିଙ୍ଗନରେ ମତେ ଅନ୍ଧ କରିଦେଲା, ସେ କ'ଣ ତୁ?"* (ତୀର୍ଥ ଯାତ୍ରା)

ମୃତ୍ୟୁ ଲୋକକୁ ଯାତ୍ରା ଏକ ତୀର୍ଥଯାତ୍ରା ବୋଲି ତାଙ୍କର ଅନନ୍ୟ ପରିକଳ୍ପନା। ମୃତ୍ୟୁର ଧୂସର ହାତ ସାରାଦିନ ସାରାରାତି ତାଙ୍କୁ ଅନ୍ୱେଷଣ କରୁଥାଏ- ଯେମିତି ପାଣି ଉପରେ ଅଦୃଶ୍ୟ ପବନର ସ୍ପର୍ଶ ସବୁବେଳେ ଲାଗି ରହିଥାଏ ଅଥଚ କେହି କାହାକୁ ଦେଖି ପାରନ୍ତି ନାହିଁ। (ସାରାଦିନ)

କବି ରାଜେନ୍ଦ୍ରକିଶୋର ପଣ୍ଡା ଜୀବନ ଓ ମୃତ୍ୟୁ ମଧ୍ୟରେ ବିଶେଷ ଦୂରତା ଲକ୍ଷ୍ୟ କରନ୍ତି ନାହିଁ। *"ଜୀବନର ପ୍ରଜ୍ଞାପନେ ମୁଁ ଦେଖୁଛି ମୃତ୍ୟୁର ବିଚିତ୍ରା/ ଜୀବନର ମୃତ୍ୟୁବୋଧେ ଉଜ୍ଜଳତର ତିର୍ଯକ ଦର୍ଶନେ/ ମୃତ୍ୟୁର ଦେହଳୀ ଏଠି ଟପିଗଲେ ଜୀବନର ପୃଷ୍ଠ/ ଆଗ୍ନେୟ ସମାସ ନେଇ ଗାଇଉଠେ ସୂର୍ଯ୍ୟମୟ ଗାନ।"* (ଚିରନ୍ତନ- ଗୌଣଦେବତା)

କବି ସୌରୀନ୍ଦ୍ର ବାରିକ ମୃତ୍ୟୁର ମିଠା ଓ ଆନ୍ତରିକ ନିମନ୍ତ୍ରଣକୁ ଉପେକ୍ଷା କରିବା ଅସମ୍ଭବ ବୋଲି ଅନୁଭବ କରନ୍ତି। ଏପରି ସ୍ୱପ୍ନର ମାୟା ଘେନି ସେ ଆସେ ଯେ

ନାରୀର ଆଲିଙ୍ଗନ ଓ ସାନ୍ନିଧ୍ୟକୁ ମଧ୍ୟ ଏଡ଼େଇ ଦେଇ ତାକୁ ଅନୁସରଣ କରିବାକୁ ହୁଏ। (ଚକ୍ରବ୍ୟୂହ-ଉପଭାରତ)।

ମୃତ୍ୟୁ ଅପେକ୍ଷାରେ ଥିବା ମଣିଷଟିର ଆଉ ବା କି ପ୍ରତ୍ୟାଶା? *''ଶ୍ମଶାନ ସମୟର ଯାଦୁଘରେ ସମ୍ପର୍କର ପ୍ରତିଧ୍ୱନି ବି ଶୁଭେ ନାହିଁ। ସବୁ ଅନୁଭବ ଯେପରି ଅସଂପୂର୍ଣ୍ଣ ରହିଯାଏ। କେବଳ ଗୋଟିଏ ମାତ୍ର ଅନୁଭବ ଉଦାର ହୋଇଉଠେ- ତାହା ମୃତ୍ୟୁର।''* କବି ଜଗନ୍ନାଥ ପ୍ରସାଦ ଦାସଙ୍କ 'ଅନ୍ୟ ସବୁ ମୃତ୍ୟୁ' କାବ୍ୟଗ୍ରନ୍ଥର ସାମଗ୍ରିକ ଅନୁଭବ ଏଇ ମୃତ୍ୟୁଚିନ୍ତାକୁହିଁ ଆଧାର କରି ଗଢ଼ିଉଠିଛି। କବି ନୃସିଂହପ୍ରସାଦ ତ୍ରିପାଠୀ ମୃତ୍ୟୁକୁ ଜୀବନ- ବଞ୍ଚିବାର ଏକ ନିୟମ ଓ ବାଦ ଭାବେ ସ୍ୱୀକୃତି ଜଣାନ୍ତି। ମୃତ୍ୟୁ ପାଇଁ ତାଙ୍କର ଅନ୍ୱେଷଣ ଅପ୍ରତିହତ। ପିତାଙ୍କ ବାର୍ଦ୍ଧକ୍ୟ, ସକାଳର ଦୁଧବାଲା, ଅତିକ୍ରାନ୍ତ ସମୟ- ସବୁଠାରେ ସେ ମୃତ୍ୟୁର ସ୍ପର୍ଶ ଅନୁଭବ କରନ୍ତି- ''ଭଙ୍ଗା ଭଙ୍ଗା ମୃତ୍ୟୁକୁ ମୁଁ/ ପ୍ରତିଦିନ ଯୋଡ଼ିଯାଏ/ ଜୀବନର ଅଠା ଦେଇ/ ମୃତ୍ୟୁର ଧଳା ଚାଦର ନଷ୍ଟ ହୁଏ/ ଲାଗିଯାଏ ବଞ୍ଚିବାର ଲାଲ ରକ୍ତ ଦାଗ।'' (ସହରର ମୃତ୍ୟୁ ସଂଖ୍ୟା)

କବି ପ୍ରସନ୍ନ ପାଟଶାଣୀଙ୍କ ପରିକଳ୍ପନାରେ ମୃତ୍ୟୁ ଓ ଜୀବନ ପାଖାପାଖି ହାତଧରାଧରି, ପତି ଓ ପତ୍ନୀ ଭଳି ଶଙ୍କାହୀନ। (ବ୍ୟାଂକକ୍‌ରେ ଗୋଟିଏ ରାତି)।

ମୃତ୍ୟୁପରି ଏକ ଅନତିକ୍ରମ୍ୟ ନିୟତିକୁ ସାମ୍ପ୍ରତିକ ଓଡ଼ିଆ କବିତାର କୌଣସି କବି ଉପେକ୍ଷା କରିପାରି ନାହାନ୍ତି। ବରଂ ତା' ପ୍ରତି ଅଧିକରୁ ଅଧିକ ମାନସିକ ବୁଝାମଣା ପ୍ରକାଶ କରିଛନ୍ତି। କେଉଁ ଅବିସ୍ମରଣୀୟ କାଳରୁ ମୃତ୍ୟୁ ମଣିଷର ସବୁଠୁ ବେଶୀ ପରିଚିତ ପ୍ରତିବେଶୀ। ଖତରା କାଠିର ପିଞ୍ଜରା ଭିତରୁ ଅତି ସନ୍ତର୍ପଣରେ ଆତ୍ମା ରୂପକ ସୁନ୍ଦର, ସହାସ୍ୟ ସ୍ପନ୍ଦନଟିକୁ ସେ ଟୋଳି ନେବ। ଛଟପଟା ମଳାଗନ୍ଧର କୋରଡ଼ରୁ ଉନ୍ମୁଖ ସାରିକାଟିକୁ ଉଡ଼ାଇ ନେଇ ପରମ ଆତ୍ମୀୟତାରେ ଲାଳନ କରିବ। ରକ୍ତହୀନ ଓ ରସହୀନ ଦେହଟିକୁ ମୃତ୍ୟୁ ପାରଣା କଲେ ମଣିଷର ସମସ୍ତ ଅକ୍ଷମତା ଓ ଅପାରଗତାର ସମାପ୍ତି ଘଟିବ। ତେଣୁ ମୃତ୍ୟୁ ପାଇଁ କବିର ଅନୁଶୋଚନା ନାହିଁ। ('କ୍ୟାନ୍‌ସର ମୃତ୍ୟୁ'- ପ୍ରତିଭା ଶତପଥୀ)। ଶ୍ରୀକୃଷ୍ଣଙ୍କର ବଂଶୀ ନାଦ ଶୁଣି ଉଚ୍ଚାଟିତ ହୋଇ ଗୋପୀମାନେ ଧାଇଁବା ପରି ଝଡ଼ରୂପୀ ମହାକାଳର ବଂଶୀନାଦରେ କେବଳ ମଣିଷ ନୁହନ୍ତି ବୃକ୍ଷ ଓ ସ୍ଥାବରମାନେ ମଧ୍ୟ ଅପୂର୍ବ ପୁଲକରେ ଧାଇଁବାରେ ଲାଗନ୍ତି। ସକାଳକୁ ନଈର କଣ୍ଠିଆରେ ନାଲି, ନୀଳ, ହଳଦି- ନାନାଦି ଫୁଲର ଶେଯ ତିଆରି ହୋଇଯାଏ। ଝଡ଼କବଳିତ ମଣିଷମାନଙ୍କୁ ପ୍ରତିଦିନର କ୍ଳାନ୍ତିକର ଜୀବନଯାତ୍ରାରୁ ମୁକ୍ତି ମିଳେ। ('ଝଡ଼'-ଶବ୍ଦର ଆକାଶ- ସୀତାକାନ୍ତ ମହାପାତ୍ର)।

ସ୍ୱୀକାର କରିବାକୁ ହେବ, ମୃତ୍ୟୁ ଚେତନା ହିଁ ସାମ୍ପ୍ରତିକ ଓଡ଼ିଆ କବିତାର ସବୁଠାରୁ ବଳିଷ୍ଠତମ ସ୍ୱର। କେତେ ରୂପରେ, କେତେ ବାଗରେ, କେତେ ପ୍ରତୀକ ଓ ରୂପକଳ୍ପ ମାଧ୍ୟମରେ, ଲୋକ-ଉପାଦାନ ଓ ମିଥ୍ ମାଧ୍ୟମରେ ଏହି ରହସ୍ୟମୟ ଚେତନାକୁ ବୁଦ୍ଧିଦୀପ୍ତତା ଓ ଶାଳୀନତାର ସହିତ ଗତ ପଚିଶବର୍ଷର କବିତାରେ ପ୍ରକାଶ କରାଯାଇଛି। ଏତେ ଭାବରେ ଏ ସମ୍ପର୍କରେ କୁହାଯାଇଛି ଯେ ମନେ ହେଉଛି ଆଉ ନୂଆକଥା କିଛି କହିବାକୁ ନାହିଁ। ଶଂସିତ ସଂକଳନଟିରେ ଏହିପରି ଭାବନାକୁ ପ୍ରତିନିଧିତ୍ୱ କରୁଥିବା ବହୁ ପ୍ରବୀଣ ଓ ତରୁଣ କବିଙ୍କର ସ୍ୱାକ୍ଷରକୁ ଅତି ସଚେତନ ଭାବେ ସ୍ଥାନିତ କରାଯାଇଛି।

## ପାରତ୍ରିକ ଭାବନା:

ମୃତ୍ୟୁଭାବନାର ଅବଶ୍ୟାମ୍ଭାବୀ ପରିଣତି ଭାବେ ସାମ୍ପ୍ରତିକ ଓଡ଼ିଆ କବିତାରେ ଏକ ବୃହତ୍ତମ ଶକ୍ତି ପାଖରେ ଆତ୍ମସମର୍ପଣର ସ୍ୱର କ୍ରମେ ସ୍ପଷ୍ଟ ହୋଇଉଠୁଛି। ବ୍ୟକ୍ତିଗତ ସ୍ଥିତି ଓ ସୀମାର ଅସାରତାଜନିତ ଉପଲବ୍ଧିରୁ କାବ୍ୟନାୟକ ଚିନ୍ତାରେ ଏକ ଶାଶ୍ୱତ ଅତିଭୌତିକ ଶକ୍ତି ଉପରେ ବିଶ୍ୱାସ ଦୃଢ଼ୀଭୂତ ହେଉଛି- ଏଥିରେ ଆମେ ଆମ ପରମ୍ପରା ସହିତ ଯୋଗସୂତ୍ର ସ୍ଥାପିତ ହୋଇଥିବା ଦେଖିବାକୁ ପାଇବା। 'ଚିତ୍ରନଦୀ'ର ମୁଖବନ୍ଧରେ ସୀତାକାନ୍ତ ଲେଖିଛନ୍ତି- "ପଞ୍ଜୁରୀର ରଙ୍ଗତ ଏଇ ମଣିଷ, ତା' ହାତର ଶୂନ୍ୟ ବଇଁଶୀରେ କେଉଁ ସୁଦୂରର ସଂଗୀତ। କେଉଁଠି ତା'ର ସ୍ଥାୟୀ ଘର? କେଉଁଥିପାଇଁ ଶୂନ୍ୟପକ୍ଷ ମେଲି ତାକୁ ଉଡ଼ିଯିବାକୁ ହୁଏ?"- ଏ ପ୍ରଶ୍ନ ଆଜି ବି ଅମୀମାଂସିତ। ମୃତ୍ୟୁ ଓ ପାରତ୍ରିକ ଚେତନାର ପାରସ୍ପରିକ ପରିପୂରକ ଚିନ୍ତାରେ ସାମ୍ପ୍ରତିକ ଓଡ଼ିଆ କବିତା ଯେ ଏକ ଉଚ୍ଚତାକୁ ଆରୋହଣ କରିପାରିଛି, ଏକଥା ନିର୍ବିବାଦରେ କୁହାଯାଇପାରେ। ରମାକାନ୍ତଙ୍କ 'ସପ୍ତମଋତୁ' କବିତାଗ୍ରନ୍ଥରେ ଏ ପରିକଳ୍ପନା ଖୁବ୍ ସ୍ପଷ୍ଟ। ଏପରିକି ପ୍ରଚ୍ଛଦରେ ଅଙ୍କିତ ଚିତ୍ରଟିଏ ପାରତ୍ରିକ ଚେତନାର ସାମଗ୍ରିକ ସ୍ୱରକୁହିଁ ଯେପରି ସୂଚେଇ ଦେବାକୁ ଉନ୍ମୁଖ ହୋଇଉଠିଛି ଓ ମୃତ୍ୟୁ ସହିତ ମୃତ୍ୟୋତ୍ତର ଚେତନାର ଏକ ଚମତ୍କାର ଯୋଗାଯୋଗ ସ୍ଥାପନ କରୁଛି। ସମୟ ସାଗରର ବିକ୍ଷୁବ୍ଧ ବେଳାଭୂମିରେ ଦିନମାସ ବର୍ଷର ନାମାବଳୀ ପିନ୍ଧି ପଡ଼ି ରହିଥିବା ମୃତ ବ୍ୟକ୍ତିର ଆତ୍ମା ରୂପକ ସୁନ୍ଦର ଓ ସତେଜ ଫୁଲ ଟାଙ୍କୁଡ଼ିଟିକୁ ମହାକାଳ ରୂପୀ ଆଦି ଅନ୍ତହୀନ ଶକ୍ତିଶାଳୀ କ୍ରେନ୍‌ଟିଏ କେଉଁ ଦୂର ଆକାଶକୁ ବହନ କରି ନେଉଥିବାର ପରିକଳ୍ପନା ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ ଓ ଭାବବାହୀ ନିଶ୍ଚୟ।

ଏହି ପାରତ୍ରିକ ଭାବନା କେତେବେଳେ ଈଶ୍ୱରଙ୍କୁ କେନ୍ଦ୍ରକରି ଗଢ଼ିଉଠିଛି ତ କେତେବେଳେ ଏକ ମହାନ୍ ଅଦୃଶ୍ୟ ଶକ୍ତିର ପରିକଳ୍ପନାରେ ରହସ୍ୟବାଦୀ ନାନାଦି ଭାବନାକୁ ଆବୋରି ବସିଛି। କେତେବେଳେ ଆଧ୍ୟାତ୍ମିକ ଚିନ୍ତନର ଉଚ୍ଛଳ ପ୍ରବାହ ତ କେତେବେଳେ ଅତିଭୌତିକ ଚେତନାରେ ବିଲୀନ ମଧ୍ୟ। କବିର ଏହି ଏକାନ୍ତ ସ୍ୱୟଂ ପ୍ରତୀତ ଉପଲବ୍ଧିକୁ ବୁଝାଇବାକୁ କାଳେକାଳେ ଓଡ଼ିଆ କବିମାନେ ପ୍ରୟାସ କରିଆସିଛନ୍ତି, ତଥାପି ଯେପରି ଏ ରହସ୍ୟ ରହିଛି ଅସମାହିତ। ଅର୍ଜୁନଙ୍କ ବିଶ୍ୱରୂପ ଦର୍ଶନ ବା ପୁଅର ମାଟିଖିଆ ପାଟିରେ ବିଶ୍ୱବ୍ରହ୍ମାଣ୍ଡ ଦେଖିବା ପରି କବିର ଏ ଉପଲବ୍ଧିକୁ ପ୍ରକାଶ କରିବାକୁ ଯୁଗେ ଯୁଗେ ଭାଷା ନିଅଣ୍ଟ ହୋଇଛି। ସେଇ କଥାକୁ ସୀତାକାନ୍ତ ତାଙ୍କର *'ଆରଦୃଶ୍ୟ'ରେ କହନ୍ତି- "କିପରି ସହିବି ଏହି ନିର୍ଜନ ମାୟା କୁହୁକ/ ଯୋଉଥିରେ ଆଉ କେହି ଅଂଶୀଦାର ହେବେନାହିଁ/ ଦେଖେଇ ପାରିବି ନାହିଁ/ କ'ଣ ମୁଁ ଦେଖୁଛି ସେ ଦୃଶ୍ୟ!"*

ତେଣୁ ଏପରି ରହସ୍ୟବାଦୀ ଅନୁଭବ ପ୍ରାଣ ଓ ଆତ୍ମାର ଏକ ଅନୁଭବ ହୋଇଥିବାରୁ ଏହାକୁ ନିର୍ଦ୍ଦିଷ୍ଟ ଭାଷା ବା ବିଶ୍ଳେଷଣ ମାଧ୍ୟମରେ ବୁଝାଇପାରିବା ଏକ ଦୁରୂହ ବ୍ୟାପାର। କାରଣ ସବୁ ସଂଜ୍ଞାକରଣକୁ ଏହି ଉପଲବ୍ଧି ପ୍ରତିହତ କରିଦେବାକୁ ସମର୍ଥ। ପୃଥିବୀର ସମସ୍ତ ଜଞ୍ଜାଳ, ପ୍ରତିଯୋଗିତା, ଅସ୍ୱସ୍ତି ଓ ଆଶ୍ୱସ୍ତି ଭିତରେ ତଥାପି କାହିଁକି ଉପରର ଏହି ଆକର୍ଷଣକୁ କବିଟିଏ ଏଡ଼େଇ ଦେଇପାରେନା? ଯଦିଓ କବି ଜାଣେ ଯେ ନଈ

ଆରପାରି, ରହସ୍ୟର କୁହୁଡ଼ିରେ ମ୍ଳାନ, ତଥାପି ଦିନେ ନାଦିନେ ସେପାରିର ସ୍ୱପ୍ନ ଅଭିବୃଦ୍ଧ ହେବାକୁ ହେବ। କବି ଭାନୁଜୀ ରାଓଙ୍କ କାବ୍ୟପଂକ୍ତିକୁ ଲକ୍ଷ୍ୟ କରନ୍ତୁ-

*"ସେପାରିରେ ଯେତେ ସ୍ୱପ୍ନ*
*ପ୍ରତ୍ୟାଶାର ହାତ ଧରି ଚାଲିଯିବି ଦିନେ ଆରପାରି*
*ଦିଗ୍‌ବଳୟ ବୋଳି ହେବି ମୁଠା ମୁଠା ମାୟାବୀ ଅବିର*
*ଠିକ୍ ଯାଇ ପହଞ୍ଚିବି ଚନ୍ଦନ ବନରେ*
*ଯେଉଁଠାରେ ବସିଥିଲେ ଏକଦା ଈଶ୍ୱର।"* (ନଈ ଆରପାରି)

'ଏକଦା' ଶବ୍ଦ ପ୍ରୟୋଗରୁ କବିମନର ସଂଶୟ ସ୍ପଷ୍ଟ ହୋଇଯାଏ; ଯଦିଓ ସେପାରିକୁ ଯିବା ତା'ର ନିର୍ଦ୍ଦିଷ୍ଟ ଭବିତବ୍ୟ ବୋଲି ସେ ଭଲଭାବେ ଜାଣେ, ତଥାପି ସେଠାରେ ଆଉ ଈଶ୍ୱର ନାହାନ୍ତି ବୋଲି ତା'ର ବିଶ୍ୱାସ। କିନ୍ତୁ ସେତିକିବେଳେ କବି ପ୍ରତିଭା ଶତପଥୀ ସେଇ ଅଦୃଶ୍ୟ ସତ୍ତା ସହିତ ନିଶ୍ଛଳ ଅଭିସାର ରଚନା କରନ୍ତି ଯେକୌଣସି ମିଷ୍ଟିକ୍ କବିପରି। କିନ୍ତୁ ଏଇ ଗୋପନ ଅଭିସାର କଥା ସେ କାହାକୁ କହିଲେ କିଏବା ବିଶ୍ୱାସ କରିବ? ତେଣୁ ଅପେକ୍ଷା ରଖନ୍ତି ଜୀବନର ଶେଷ ମୁହୂର୍ତ୍ତଟିକୁ- ସେତେବେଳେ ସବୁ ଗୋପନୀୟ କଥା କହିଦେଇ ନିଶ୍ଚିନ୍ତ ଭାବେ ଆଖି ବୁଜିବେ। ତାଙ୍କର ଦୃଢ଼ ବିଶ୍ୱାସ ଏ ପୃଥିବୀରୁ କିଛି ଲୁଚେଇ ନେଇ ହୁଏନାହିଁ। (ନିଶ୍ଛଳ ଅଭିସାର)। କବି ବ୍ରହ୍ମୋତ୍ରୀ ମହାନ୍ତିଙ୍କ ସଙ୍କଳନ 'ସ୍ତବକ'ରେ ପାଇବା ସେଇ ରହସ୍ୟଭରା ଆକୁତି। ପରମ ଉଦ୍ଦେଶ୍ୟରେ ସେ ଯେପରି ରଚି ଦିଅନ୍ତି ଅନେକ ସ୍ତବକର ଫୁଲ ହାରଟିଏ। ଯାହାଙ୍କ ପାଇଁ ଏତେ ଅନୁରାଗ, ତାଙ୍କୁ ଜୀବଦ୍ଦଶାରେ କବି କେତେବା ଉପଲବ୍ଧି କରିପାରେ? ତେଣୁ ଆରପାରିର ଯାତ୍ରା ପାଇଁ ତା'ର ସ୍ୱାଭାବିକ ଆକାଂକ୍ଷା ବଳବତ୍ତର ହୋଇଉଠେ। କବି ବୈକୁଣ୍ଠନାଥ ଓ କୁନ୍ତଳାକୁମାରୀଙ୍କ ସ୍ୱର ସହିତ ସାମ୍ପ୍ରତିକ କବିତାର ଏଇ ସ୍ୱରରେ ଏକ ଚମତ୍କାର ଯୋଗାଯୋଗ ଲକ୍ଷ୍ୟ କରିବା।

କବି ହରପ୍ରସାଦ ଦାସ ବାହୁଡ଼ିଯିବା ବେଳର ମୂକ ସଂଧ୍ୟାକୁ ନୀଡ଼ ଫେରନ୍ତା ଚଢ଼େଇଙ୍କ ଅର୍ଥହୀନ କୋଳାହଳରେ ମୁଖର କରିଦେବାକୁ ଚାହାନ୍ତି। ଦିନ ଶେଷରେ ମୁଠାଏ ଗୋଡ଼ିଧୂଳି ହାତରେ ଧରି ଆମର ଫେରିବାର କଥା- ଫେରିବା। ତେଣୁ ଫେରିବାର ସମୟକୁ ଟିକେ କୋଳାହଳମୟ କରିବାକୁ କବିଙ୍କ ଇଚ୍ଛା ଏକାନ୍ତ ଅଭିନବ ଓ ଆନ୍ତରିକ ନୁହେଁକି? (କଥା)

କବି ହରିହର ମିଶ୍ର ତାଙ୍କ କାବ୍ୟଗ୍ରନ୍ଥ 'ଭିତିରି ଚନ୍ଦନ' (୧୯୯୪)ରେ କେବଳ ଓଡ଼ିଶାର ଐତିହ୍ୟ ଓ ସଂସ୍କୃତି (ଯାହାକୁ ଜଗନ୍ନାଥ ସଂସ୍କୃତି ନାମରେ ନାମିତ କରାଯାଏ)କୁ ସ୍ମରଣରେ ଆଣି ନାହାନ୍ତି, ପାରତ୍ରିକ ଭାବନା ସହିତ ଅସହାୟ ମାନବାତ୍ମାର ସଂଯୋଗ- ସେତୁ ସ୍ଥାପନରେ ପ୍ରୟାସୀ ହୋଇଛନ୍ତି ଯାହା ବେଳେବେଳେ ରହସ୍ୟବାଦୀ ସ୍ତରକୁ ଉନ୍ନୀତ ହୋଇଯାଏ ଏବଂ ଏକ ଗୋପନୀୟ ଗହନ ଚିତ୍ର ସହିତ ଏକ ଦୂରଇଲାକାର ସ୍ୱପ୍ନ ଓ ସମ୍ଭାବନାରେ ଶାଣିତ ହୋଇଉଠେ। କବି ଗୋପାଳକୃଷ୍ଣ ରଥ ସେଇ ଦୂର ଇଲାକାର ସଂଶୟଭରା ସ୍ୱପ୍ନରେ ପଚାରନ୍ତି- *"ଯିଏ ଜଗି ବସିଚି ଘାଟ/ ତାକୁ ପଚାର/ ବଞ୍ଚିବାରୁ ଜୀଇଁବା କେତେଦୂର/ କେତେଦୂର ନଜର ଉପୁଜିରୁ ଅବଲୟ ଧାର/ କେତେଦୂର ନୀଳ ଆଲୁଅରୁ ନୀଳ ଅନ୍ଧକାର?"* (କେତେଦୂର)

କବି ପ୍ରବାସିନୀ ମହାକୁଡ଼ ସେଇ ଅଦୃଶ୍ୟ ପରମ ପ୍ରେମିକ ସହିତ ମିଳନ ପାଇଁ ଅପେକ୍ଷା କରିକରି ମନର ଭାଷାରେ ଚିଠିର ଉତ୍ତର ଆଶା କରନ୍ତି। ତାଙ୍କ ପ୍ରତୀକ୍ଷାର ଶେଷନାହିଁ- କାରଣ ଚିଠିର ଉତ୍ତର ଆସେନାହିଁ। ତେଣୁ ସୁଦୂରତମ ପ୍ରେମିକ ପାଇଁ ତାଙ୍କର ଜିଜ୍ଞାସା- *"ମତେ କହିଦିଅ ହେ ମୋର ସୁଦୂର ପ୍ରେମିକ/ ସତେ କ'ଣ ଶୁଭେ ନାହିଁ/ ପହଞ୍ଚିପାରେ ନାହିଁ ପବନର ବେଗ/ ଆଉ ମେଘର ପାଦେଶି ବେଇଁ/ ମୋ ଆତ୍ମାର ଡାକ?"* (ତମେ ନିଜେ ପ୍ରେମ)

ସେତିକିବେଳେ କବି ଫନୀ ମହାନ୍ତି ଆଶଙ୍କା କରନ୍ତି- ଅସମ୍ପୂର୍ଣ୍ଣ ରହିଥିବା ଶେଷ କବିତାର ଶେଷ ଧାଡ଼ିଟି ହୁଏତ ଅନ୍ୟ ଜୀବନରେ ଓ ଅନ୍ୟ କେଉଁ ଜଗତରେ ପୂରଣ ହୋଇପାରେ, ନହୋଇପାରେ ବି। ଭଣିତା ବାଢୁଥିବା କବି ନିଜ ସ୍ଥିତିର ଓ ନିଜ ଜୀବନ ପରବର୍ତ୍ତୀ ପାରତ୍ରିକ ସ୍ଥିତିର କୂଳକିନାରା ପାଏନାହିଁ। କେବଳ ସଂଶୟର ଭଉଁରୀରେ ଉବୁଟୁବୁ ହେବାହିଁ ସାର ହୁଏ। (ଜୀବନ ପାଇଁ ତୁମେ ହିଁ ସୁନ୍ଦର)। କବି ନିତ୍ୟାନନ୍ଦ ନାୟକ ମଧ୍ୟ ଜୀବନର ପାରତ୍ରିକ ସ୍ଥିତି ପାଇଁ ବେଶ୍ ସଚେତନ। ତେଣୁ ଜୀବନର ସମସ୍ତ ବ୍ୟର୍ଥତା ଓ ବ୍ୟସ୍ତତାକୁ ଭୁଲୁ ନ ଭୁଲୁଣୁ ଜୀବନ ବୋଇତ ଆରପାରିର କେଉଁ ଅଚିହ୍ନା ଉପକୂଳରେ ଲାଗିଥିବା ସେ ଉପଲବ୍ଧି କରନ୍ତି- *"କ୍ରମାନ୍ୱୟେ ସମସ୍ତ ଅଦୃଶ୍ୟ ହୁଏ ଓ ଶେଷରେ ତୁମ ଲୁହଭରି ଉଜ୍ଜ୍ୱଳ ଆଖିର କଥା ଶୁଣିବାଆଗରୁ ବୋଇତ ଲାଗଇ କେଉଁ ଅଚିହ୍ନା ଉପକୂଳରେ।"*

(ହାଟବାହୁଡ଼ା)

ପ୍ରାୟ ସାମ୍ପ୍ରତିକ ବୟସ୍କ ଓ ତରୁଣ ସମସ୍ତ କବିଙ୍କ ସ୍ୱରରେ ଏହିପରି ଏକ ମିଷ୍ଟିକ୍ ଭାବନା ଆମ କାବ୍ୟ ପରମ୍ପରା ସହିତ ଯୋଗସୂତ୍ର ସ୍ଥାପନକରୁଥିବା ଆଶ୍ୱାସନାର ବିଷୟ। ଏହି ଅତିଭୌତିକ କାବ୍ୟବିଳାସ ଓଡ଼ିଆ କବିତାର କୋଠ ସମ୍ପତ୍ତି ବୋଲି କହିବାକୁ ହେବ। କାରଣ ଓଡ଼ିଆ କବି ମାତ୍ରେଇ ଦାର୍ଶନିକ ଓ ଆଧ୍ୟାତ୍ମିକ ଅନୁସନ୍ଧିତ୍ସା ପ୍ରବଣ। ଭଗବତ ଚେତନାର ଯେଉଁ ସୂକ୍ଷ୍ମ ନିର୍ଯ୍ୟାସ କବିର ଉପଲବ୍ଧିରେ ଏହି ଗଭୀର ଓ ମାର୍ମିକ ଆସ୍ପୃହାକୁ ଅଧିକ ସାନ୍ଦ୍ର ଓ ଘନିଷ୍ଠ କରି ରଖିଛି, ତାହାହିଁ ତା'ର ଆଧ୍ୟାତ୍ମିକ ବିଶ୍ୱାସ ଓ କ୍ରମୋତ୍ତରିତ ମିଷ୍ଟିକ୍ ମନୋବୃତ୍ତି। ପ୍ରୟୋଗବାଦୀ କାବ୍ୟ ପର୍ଯ୍ୟାୟରେ ଏ ସ୍ୱରଟି ଥିଲା ଏକାନ୍ତ ନିମିଳିତ। କିନ୍ତୁ ସାମ୍ପ୍ରତିକ କାବ୍ୟ ପ୍ରୟାସରେ ପୁନଶ୍ଚ ଏ ସ୍ୱର ଆମ କାବ୍ୟଧାରାର ଏକ ବହୁ ଉପଲବ୍ଧ ଓ ବହୁଚର୍ଚ୍ଚିତ ଭାବବିଳାସ ସହିତ ଯୋଗସୂତ୍ର ସ୍ଥାପନ କରି ବହୁଭାବରେ ଓ ବହୁ ରୂପରେ ତା'ର ପରିପ୍ରକାଶର ସ୍ୱାକ୍ଷର ରଖିପାରିଛି ଓ ପାଠକମାନଙ୍କ ସଂପ୍ରୀତି ଲାଭ କରିଛି- ଏକଥା କହିବାରେ ମତଦ୍ୱୈଧ ନଥାଇପାରେ।

ଏଠାରେ ଆଉ ଏକ ପ୍ରସଙ୍ଗ ସୂଚେଇବା ଉଚିତ ମନେକରୁଚି। ତାହା ହେଉଛି ମାର୍କ୍ସୀୟ କାବ୍ୟାନୁଚିନ୍ତା। ମାର୍କସ୍‌ବାଦୀ ଭାବନା ଉଣା ଅଧିକେ ପୃଥିବୀର ସବୁ ଭାଷାର ସାହିତ୍ୟକୁ ପ୍ରଭାବିତ କରିଆସିଛି, ଯଦିଓ ଅନ୍ୟ କେତେକ ଭାରତୀୟ ଭାଷାର କବିତା ଭଳି ଓଡ଼ିଆ କବିତାରେ ଏହି ମାର୍କସବାଦୀ- ପ୍ରଗତିବାଦୀ ଧାରା ବହୁଳ ଭାବରେ କାବ୍ୟ ସ୍ରଷ୍ଟାମାନଙ୍କୁ ଆକର୍ଷିତ କରିନାହିଁ। ପ୍ରଗତିବାଦୀ କବିତାରେ ସମାଜର ଯଥାର୍ଥ ଚିତ୍ରଣ, ପୁଞ୍ଜିବାଦ ପ୍ରତି ବିଦ୍ରୋହର ସ୍ୱର, ଶୋଷିତ ପ୍ରତି ସହାନୁଭୂତି, ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦ, ମଣିଷର ମୁକ୍ତି କାମନା ଇତ୍ୟାଦି ବିଭିନ୍ନ ଭଙ୍ଗୀରେ ରୂପାୟିତ ହୋଇଥିଲା। ବିଦ୍ରୋହ, ପ୍ରତିବାଦ

ଓ ବ୍ୟଂଗ ଏହି କାବ୍ୟଧାରାର ଥିଲା ବିଶେଷତ୍ୱ। ଏହା ଭିତରେ ଯେଉଁଠି ସାମାଜିକ ବାସ୍ତବତା ସଫଳ ଭାବେ ରୂପାୟିତ ସେଠି କବିତାର କଳାତ୍ମକ ଉତ୍କର୍ଷ ମଧ୍ୟ ପ୍ରତିପାଦିତ। କିନ୍ତୁ ଯେଉଁଠି ଏହି ଧାରାର କବିତା ପ୍ରଚାର ବା ସ୍ଲୋଗାନଧର୍ମୀ ହୋଇପଡ଼ିଛି, ସେଠାରେ କାବ୍ୟସୃଷ୍ଟିର ଆବେଦନ ସୀମିତ ହେବାକୁ ବାଧ୍ୟହୋଇଛି। ସଚ୍ଚି ରାଉତରାୟ, ଅନନ୍ତ ପଟ୍ଟନାୟକଙ୍କ ଭଳି ପ୍ରମୁଖ କବିମାନେ ଓଡ଼ିଆ ମାର୍କସବାଦୀ କବିତାର ଆଦ୍ୟ ପ୍ରବର୍ତ୍ତକ ଭାବରେ ସ୍ୱୀକୃତ ହୋଇଛନ୍ତି। ପରବର୍ତ୍ତୀ ସମୟରେ ସଚ୍ଚିବାବୁ ପ୍ରୟୋଗବାଦୀ ଧାରାକୁ ଗ୍ରହଣ କରିଥିଲେ ବି ସଂପ୍ରତି ତାଙ୍କ କବିତାରେ ପୂର୍ବର ସେଇ ବାମପନ୍ଥୀ ସ୍ୱର ପୁନଶ୍ଚ ଶୁଣିବାକୁ ମିଳେ। ରଘୁନାଥ ଦାସ, ରବି ସିଂ ଓ ବ୍ରଜନାଥ ରଥଙ୍କ କବିତାରେ ବିପ୍ଳବର ଉଚ୍ଚାରଣ ସ୍ପଷ୍ଟ ରୂପ ନେଇ ପ୍ରକାଶ ପାଇଛି। ସାଂପ୍ରତିକ ସମୟର ଅନେକ କବି ପ୍ରଗତି ଚେତନାର ପ୍ରୟୋଗଧର୍ମୀ ରୂପାୟନ ଦିଗରେ ସଫଳ ପ୍ରଚେଷ୍ଟା କରିଛନ୍ତି। ଏଠାରେ କୁହାଯାଇପାରେ ଯେ ପ୍ରଗତି ଚେତନାକୁ କେବଳ ରାଜନୈତିକ ଦୃଷ୍ଟିକୋଣରୁ ବିଚାରକଲେ ହେବନାହିଁ। ଏ କବିତାରେ ମାନବ ସମାଜପ୍ରତି ଏକ ସାମଗ୍ରିକ ଅଙ୍ଗୀକାରବୋଧ ରହିଛି। ଏକ ବୃହତ୍ତର ପ୍ରତିବଦ୍ଧତା ସହିତ ମଣିଷ ଓ ତା'ର ପରିବେଶ ପ୍ରତି ଅବିଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ, ତଥା ଏକ ଚୂଡ଼ାନ୍ତ ମାନବତାବାଦ (radical humanism)ର ପ୍ରତିଷ୍ଠା ସାଂପ୍ରତିକ କବିତାରେ କଳାତ୍ମକଭାବେ ପ୍ରକାଶିତ। ଏହି ପରିପ୍ରେକ୍ଷୀରେ ବ୍ରଜନାଥ ରଥଙ୍କ 'ହେ ମହାଜୀବନ!' ଓ ପ୍ରସନ୍ନ କୁମାର ମିଶ୍ରଙ୍କ 'ଟ୍ରକ ଡାଲାରେ ସନାତନ' ଦୁଇଟି ସ୍ମରଣୀୟ କାବ୍ୟଗ୍ରନ୍ଥ। ଆଶୁତୋଷ ପରିଡ଼ାଙ୍କ 'ଚଣ୍ଡାଳ' କବିତା ସଂକଳନରେ କଷ୍ଟଗ୍ରସ୍ତ ମାନବତାର ମାର୍ମିକ ଉଚ୍ଚାରଣ ଶୁଣିବାକୁ ମିଳେ। ବ୍ରହ୍ମାନନ୍ଦ ଦାସ, ସଦାଶିବ ଦାଶ ପ୍ରମୁଖଙ୍କ କବିତାରେ ମଧ୍ୟ ମାନବିକ ସଂବେଦନା ପ୍ରଗତିଶୀଳତାର ସ୍ୱାକ୍ଷର ବହନ କରେ।

ପ୍ରୟୋଗବାଦୀ କବିତାକୁ ଆଧୁନିକତାବାଦ ଭାବେ ନାମିତ କରାଗଲେ ସାଂପ୍ରତିକ କବିତାର ପ୍ରାୟ ଦଶ ବାର ବର୍ଷର ସୃଷ୍ଟିକୁ (୧୯୮୧-୯୩) ଉତ୍ତର ଆଧୁନିକ କବିତା (post modern poetry) ଭାବେ ଚିହ୍ନିତ କରାଯାଇ ପାରିବ। କାରଣ ଏ ସମୟଖଣ୍ଡର କାବ୍ୟଧାରାରେ କିଛିଟା ମୌଳିକ ପରିବର୍ତ୍ତନ ପରିଲକ୍ଷିତ ହେଉଛି। ଅତି ପ୍ରତିଷ୍ଠିତ କବିମାନେ କବିତାର ସୁର୍ବୋଧ୍ୟତାକୁ ପରିହାର କରି ସରଳ, ସ୍ୱଚ୍ଛ, ଗୀତି-ପ୍ରବଣ ହେବାକୁ ଚେଷ୍ଟା କରିଛନ୍ତି। ସେମାନଙ୍କ କବିତାରେ ପୁନଶ୍ଚ ଈଶ୍ୱର ବିଶ୍ୱାସ, ଆଧ୍ୟାତ୍ମିକ ଆସ୍‌ପୃହା, ପରମ୍ପରା ଓ ମୂଲ୍ୟବୋଧ ପ୍ରତି ଆସ୍ଥା ଲକ୍ଷ୍ୟ କରାଯାଇଛି। ପ୍ରୟୋଗବାଦୀ କବିତାରେ ଜୀବନପ୍ରତି ଯେଉଁ ଗୈରିକ ଅବସାଦ, ନେତିବାଦୀ ଦୃଷ୍ଟିଭଙ୍ଗୀ, ଚରମ ହତାଶା ପ୍ରକାଶ ପାଇଥିଲା, ତାହା କ୍ରମେ ଅସ୍ତିବାଚକତା ଆଡ଼କୁ ମୁହାଁଇଥିବା ଆଶ୍ୱାସନାର ବିଷୟ। ବିଶେଷତଃ ଅଶି ପରବର୍ତ୍ତୀ ତରୁଣ କାବ୍ୟସ୍ୱରରେ ଏହି ଅସ୍ତିବାଚକତା (positive attatude) ଓ ଦୃପ୍ତ ମାନବତାବାଦ (radical humanism)କୁ ସନ୍ଧାନ କରାଯାଇପାରେ। ଆମ ତରୁଣ ପୀଢ଼ିର କବିମାନେ ନିର୍ଦ୍ଦିଷ୍ଟ କୌଣସି ସମ୍ଭାବନାର ଶୀର୍ଷରେ ଉପନୀତ ହୋଇ ନଥିଲେ ବି ସେମାନଙ୍କ କାବ୍ୟସ୍ୱରରେ ଚମତ୍କାର ଆଶାବାଦ ଓ ଆତ୍ମଦ୍ୱନ୍ଦ୍ୱହୀନ ଉଚ୍ଚାରଣ ଶୁଣିବାକୁ ମିଳୁଛି। ଏପରିକି ଉତ୍ତର-ଆଧୁନିକ କବିତାରେ ମିଥ୍‌ର ବିପୁଳ ପ୍ରୟୋଗ କବିତାକୁ ଏହା ଏକ ନୂତନ ପରିଆରା ଯେ ଦେଇଛି ଓ ପାଠକର ନିକଟବର୍ତ୍ତୀ କରିପାରିଛି ଏହା ଅସ୍ୱୀକାର୍ଯ୍ୟ କରି ହେବନାହିଁ। ସାଂପ୍ରତିକ କବିତାରେ ମିଥ୍‌କୁ

ମିଥ୍ ପାଇଁ କେବଳ ପ୍ରୟୋଗ କରାଯାଉନାହିଁ; ବରଂ ମିଥ୍‌ର ପୁନର୍ନ୍ୟାସ (myth recreated) ଘଟିଛି ଓ ସାଂପ୍ରତିକ ମଣିଷର ବହୁ ଜଟିଳ ଅନୁଭୂତି ସହିତ ମିଥ୍ ସାମିଲ ହୋଇପାରିଛି ତଥା କବିତାକୁ ନୂତନ ବିଭୂତି, ଆତ୍ମିକ ସୌନ୍ଦର୍ଯ୍ୟ ପ୍ରଦାନ କରିଛି। ସମଗ୍ର ପୃଥିବୀର ଏହି ଉତ୍ତର ଆଧୁନିକ କବିତାରେ ନାରୀସତ୍ତାର ସ୍ୱାଧିକାର ପ୍ରତିଷ୍ଠାପାଇଁ ଯେଉଁ ଉଗ୍ରସ୍ୱରଟି ପ୍ରକାଶିତ, ତାକୁ ଫେମିନିଜିମ୍ ଭାବରେ ଚିହ୍ନିତ କରାଯାଇଛି। ଏହିପରି ସ୍ୱର ଆମ ତରୁଣ କବୟତ୍ରୀମାନଙ୍କ କବିତାରେ ବେଶ୍ ସ୍ପଷ୍ଟ।

ଶେଷରେ ଏହି କାବ୍ୟ ସଂକଳନ ବିଷୟରେ ମୋର ଶେଷ ବକ୍ତବ୍ୟ ହେଉଛି ମୋର କବିତା ନିର୍ବାଚନକାଳୀନ ଅସ୍ୱସ୍ତି, ଅସନ୍ତୋଷ ଓ ଅପାରଗତା। ମୁଁ ଯେଉଁ କବିଙ୍କ ଯେଉଁ କବିତାଟି ଏ ସଂକଳନ ପାଇଁ ନିର୍ବାଚନ କରିଛି ପରେପରେ ମନେହୋଇଛି ସେଇ କବିଙ୍କର ଆହୁରି ସୁନ୍ଦର ଓ ସାର୍ଥକ କବିତାଟିଏ ବୋଧହୁଏ ମୋ ଦୃଷ୍ଟିର ଅନ୍ତରାଳରେ ରହିଗଲା-ଯାହାକୁ ମୁଁ ଧରିପାରିଲି ନାହିଁ। ବେଳେ ବେଳେ ଏପରି ଅସ୍ୱସ୍ତି ମୋତେ ଏ କାର୍ଯ୍ୟକ୍ରମରେ ଅଚଳ କରିଦେଇଛି। ମୁଁ ମାସ ମାସ ଧରି ଆଗେଇପାରିନାହିଁ। ଏବେ ମଧ୍ୟ ଖୁବ୍ ଅଭଳନମୟ ସଂକଳନଟିଏ ପାଠକମାନଙ୍କୁ ଦେଇପାରିଛି ବୋଲି ଦାବି କରିପାରୁ ନାହିଁ। ତେଣୁ ମୋର ଅସାମର୍ଥ୍ୟ ପାଇଁ ସଚେତନ ଓଡ଼ିଆ ପାଠକ ଓ ବିଦ୍ୱାନ କବିମାନଙ୍କ ଠାରେ କ୍ଷମାପ୍ରାର୍ଥୀ ହେବା ଛଡ଼ା ଅନ୍ୟ ପନ୍ଥା ନାହିଁ। ନ୍ୟାସନାଲ ବୁକ୍ ଟ୍ରଷ୍ଟ ଏ ଦାୟିତ୍ୱଟି ମୋ'ଠାରୁ ଅଧିକ ଅଭିଜ୍ଞ ଅନ୍ୟ କେଉଁ ସମୀକ୍ଷକଙ୍କ ଉପରେ ବା ଗୋଟିଏ ସମାଲୋଚକମଣ୍ଡଳୀ ହାତରେ ଦେଇପାରିଥିଲେ ସଂକଳନଟି ଆହୁରି ଐଶ୍ୱର୍ଯ୍ୟମଣ୍ଡିତ ହୋଇପାରିଥାନ୍ତା। ମୋ ଉପରେ ଦାୟିତ୍ୱଟି ସମର୍ପଣ କରିଥିବାରୁ ମୁଁ କୃତଜ୍ଞ ନିଶ୍ଚୟ। ଅନ୍ୟପକ୍ଷରେ ଯେଉଁ ତରୁଣ କବିମାନଙ୍କୁ ମୁଁ ଏ ସଂକଳନର ମଧ୍ୟରେ ରଖିପାରିଲି ନାହିଁ, ସେମାନେ ଯେ ମୋ ପ୍ରତି ଅସନ୍ତୁଷ୍ଟ ହେବେ- ଏ ଆଶଙ୍କା ଅଳୀକ ନୁହେଁ। ପ୍ରୟୋଗବାଦୀ କାଳର ଯେଉଁ ସିଦ୍ଧିପ୍ରଦ କବିମାନେ ଅଧୁନା ପ୍ରାୟ ନୂଆ କିଛି ଲେଖୁନାହାନ୍ତି, ସେମାନଙ୍କୁ ଏ ସଂକଳନରୁ ବାଦ୍ ଦିଆଯାଇଥିବା ବେଳେ ଗତ ଦଶ ବାର ବର୍ଷ ଧରି ଧାରାବାହିକ ଭାବେ କବିତା ଲେଖି ଯେଉଁ ତରୁଣ କବିମାନେ ସଫଳତାର ଦ୍ୱାର ଦେଶରେ ଉପନୀତ ହୋଇଛନ୍ତି, ସେମାନଙ୍କ ସହିତ ଉତ୍ତର ପ୍ରୟୋଗବାଦୀ କାଳର (୧୯୬୭ ପରବର୍ତ୍ତୀ) ସମସ୍ତ ଯଶସ୍ୱୀ କବିଙ୍କୁ ଏ ସଂକଳନରେ ଅନ୍ତର୍ଭୁକ୍ତ କରାଯାଇଛି। ନ୍ୟାସନାଲ ବୁକ୍ ଟ୍ରଷ୍ଟ ପକ୍ଷରୁ ପ୍ରଥମ ସଂକଳନର ପ୍ରାୟ ପଚିଶ ବର୍ଷ ବ୍ୟବଧାନରେ ଏହି 'ସାମ୍ପ୍ରତିକ ଓଡ଼ିଆ କବିତା' ସଂକଳନଟି ପ୍ରକାଶିତ ହେଉଅଛି। ଏଣିକି ଏହି ସମୟ ବ୍ୟବଧାନ ଦଶ ବର୍ଷ ମଧରେ ସୀମାୟିତ ରହିପାରିଲେ ଏକବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଆଉ ଗୋଟିଏ ସଂକଳନ ପ୍ରକାଶିତ ହୋଇପାରିବ। ଆଜିର ବହୁ ତରୁଣ କବି ସେତେବେଳକୁ ନିଶ୍ଚିତ ଭାବେ ବହୁ ସିଦ୍ଧିର ଅଧିକାରୀ ହୋଇଥିବେ ଓ ସେମାନଙ୍କୁ ଅନାୟାସରେ ସଂକଳନଭୁକ୍ତ କରାଯାଇପାରିବ- ଏଥିରେ ସନ୍ଦେହ ନାହିଁ। ତେଣୁ ଯେଉଁମାନଙ୍କୁ ମୁଁ ମୋର ସମସ୍ତ ଆଗ୍ରହ ସତ୍ତ୍ୱେ ଏ ସଂକଳନରେ ପତ୍ରସ୍ଥ କରିପାରିଲି ନାହିଁ, ସେମାନଙ୍କ ଉଦାରତାକୁ ପୁଂଜି କରି ଏହି ସଂକଳନର ପ୍ରସାର ଓ ଆଦର କାମନା କରୁଛି।

ନିତ୍ୟାନନ୍ଦ ଶତପଥୀ

# ପରିଚୟ ପତ୍ର

ସଚ୍ଚିଦାନନ୍ଦ ରାଉତରାୟ

ନିଜ ପରିଚୟ ମୁଁ କେଉଁପରି ଦେବି,
      ଅନ୍ୟ କିଏ ଦେବ ବା କିପରି ?
ମୁଁ କି ଜାଣେ ଆସିଲି ମୁଁ କେଉଁଠାରୁ
      ଯିବି କେଉଁଠାକୁ :
କିପରି କଳିବି ନିୟତକୁ
      ଯା' ବିସ୍ତୃତ
ଅଜଣାରୁ ଅଜଣା ପର୍ଯ୍ୟନ୍ତ ।

ମୁଁ ତ ଏକ ଯାଯାବର, ଚାଲିଥିଛି ଅବିରତ
ସେଠାରୁ ସେଠାକୁ ।
ମୁଁ ଜାଣେନା କେଉଁଠାରୁ କେଉଁଠାକୁ
ଏବଂ କେତେବେଳେ
ଦେଶ କାଳ ପାତ୍ରର ବାହାରେ
      ମୋ' ଅତୀତ, ମୋର ଭବିତବ୍ୟ,
ଦେଖା ଶୁଣା ଜଣାର ବାହାରେ
      ଅବର୍ତ୍ତମାନରେ ।

ମୁଁ ଅଟେ ମୋ'ର ଅଦୃଷ୍ଟ ।
ମୋ'ର ସ୍ଥିତି-ବିନ୍ଦୁ ଏକ କାଳର ବୁଦ୍‌ବୁଦ
ଏକ ଲିତା, ଗୋଟିଏ ମୁହୂର୍ତ୍ତ ।
ଯାତ୍ରା ମୋ'ର ଅପୂର୍ଣ୍ଣ ଛେଦକୁ ।
ମୁଁ ପୁଣି ସମାହାର ଦ୍ୱନ୍ଦ୍ୱ
ନିଜ ଛଡ଼ା ଅନ୍ୟକୁ ସଂଖୋଳେ
ଧରାଦିଏ ବିରୋଧାଭାସରେ ।
ମୋ'ର ପରିଚୟ ପତ୍ର ଝୁଲେ ଏକୋଇ ବାଟରେ,
ନାହିଁ ଯା'ର କିଛିହିଁ ଅକ୍ଷର ।

# ପ୍ରବଞ୍ଚନା

ରଘୁନାଥ ଦାସ (ଜଟାୟୁ)

ମୁଁ ସେମାନଙ୍କୁ ପ୍ରତିଶ୍ରୁତି ଦେଇଥିଲି
ରାମରାଜ୍ୟ।
ରାମ ଦେହରକ୍ଷା କଲେ।
ଯୋଜନାର ନାମ ପଞ୍ଚବଟୀ :
ଗଢ଼ାହେବ ଲଙ୍କା।
ଲଙ୍କାଗଡ଼ ଲାଗି ଆସେ
ବିଦେଶରୁ ଟଙ୍କା।
ଋଣଭାରେ ଚାଷୀ ମରେ - ହା ଅନ୍ନ, ହା ଅନ୍ନ,
ପେଟର ଜ୍ୱାଳାରେ ଜଳିଯାଏ ସବୁ ସବୁଜ ସପନ
ରକ୍ଷାକର, ରକ୍ଷାକର,
ମୋତେ ଗୋଡ଼ାଇଛି ମୋର ଦୈତ୍ୟ ଭୟଙ୍କର।

ମୁଁ ସେମାନଙ୍କୁ କହିଲି ଆଣିଦେବି
ଘିଅ ମହୁ।
ଗାଈ କ୍ଷୀର ଦେଲା ନାହିଁ;
ମହୁମାଛି ମହୁ ସଞ୍ଚିଲାନି :
ଜମିଲା ଟିଣକୁ ଟିଣ ଅଘିରା,
ମହୁ ବଦଳରେ ମହୁରା।
ସେମାନେ ହଲ୍ଲା କଲେ;
ଏଇଟା କଂସପୁରୀ ମଥୁରା :
ରକ୍ଷାକର, ରକ୍ଷାକର,
ମୋତେ ଗୋଡ଼ାଇଛି ମୋର ଦୈତ୍ୟ ଭୟଙ୍କର।

ମୁଁ ଆଶ୍ୱାସନା ଦେଲି, ଆଣିବି
ସମାଜବାଦ।
ବୀମା, ବ୍ୟାଙ୍କ୍ କଲି କେତେ ଜାତୀୟକରଣ;
ଅମଲାଙ୍କ ବାହୁ ତଳେ ପଶିଲି ଶରଣ;
ଅମଲା ଯେ ଚଳୁକଲେ ସମୁଦ୍ରେକ ପାଣି;
ତାହା ଦେଖି ଗଙ୍ଗାମାତା ବହିଲା ଉଜାଣି।
ସେମାନେ ଚିହ୍ନାନ୍ତି :

ସମାଜବାଦର ଦୁହା ଢୋଲପରି ଫମ୍ପା;
ଗୋଦରୀ କାଳୀକୋତରୀ, ନାଁଟା ଯାହା ଚମ୍ପା।
ରକ୍ଷାକର, ରକ୍ଷାକର,
ମୋତେ ଗୋଡ଼ାଇଛି ମୋର ଦୈତ୍ୟ ଭୟଙ୍କର।

ମୁଁ ହଲପ କରି କହିଲି; ଦେବି
ନିର୍ମଳ ଶାସନ।
ଗୋଳିଆ ପାଣିକି ବାଡ଼େଇଲି;
ପାଣିହେଲା ଆହୁରି ଗୋଳିଆ;
ବେଠିଆ ପିଠିକୁ ଆଉଁଷିଲି;
ଲୋଡ଼ା ତା'ର ଗୋଟାଏ କୋଠିଆ।
କମ୍ବଳଟା ଯାକ ଖାଲି ସାଲୁ ବାଲୁ;
କିଏ ହେଟା ପୁଣି କିଏ ଗାଡ଼ଭାଲୁ।
ରକ୍ଷାକର, ରକ୍ଷାକର
ମୋତେ ଗୋଡ଼ାଇଛି ମୋର ଦୈତ୍ୟ ଭୟଙ୍କର।

ମୁଁ କହିଲି ଉଚ୍ଚେ: ଏଥରକ ନିଶ୍ଚେ
ହଟାଇବି ଗରିବାନା।
ହୁଙ୍କି ମାରି ମନ୍ତ୍ରୀ ହେଲି,
ବନିଗଲି ମୁଁ ତାଙ୍କ ମୁରବୀ।
ପେଟୁଆଙ୍କ ତଳିପେଟେ କିନ୍ତୁ
ବଢ଼ିଲା ଚରବୀ।
ତା' ଦେଖି, ଗରିବଗୁଡ଼ାକ ପାଟିକଲେ,
କେହି କେହି ଛାଡ଼ିଲେ ବି ଢେଲା।

ବନ୍ଦକରି ଇମାଏତି
ଠୁକିଦେଲି ମୁଖବନ୍ଦ ତାଲା
ଦେଶସାରା।
ମଉକା ଦେଖି
ଜନତା ମାଇଲା କୁରଚିକୁ ଶକ୍ତ ଏକ ନାତ
ଗଡ଼ିପଡ଼ି ହଜିଲା ମୋ ବୁଦ୍ଧିଜ୍ଞାନ,
ହେଲି ଚିତ୍‌କାତ୍।
ରକ୍ଷାକର, ରକ୍ଷାକର
ମୋତେ ଗୋଡ଼ାଇଛି ମୋର ଦୈତ୍ୟ ଭୟଙ୍କର।

ମୁଁ ସେମାନଙ୍କୁ କଥା ଦେଇଛି;
କମାଇବି ଦରଦାମ୍

ବେପାରୀଙ୍କ ପାଣ୍ଠିନେଇ କରିଥିଲି କାରବାର;
ନୋଟ ନେଇ ଭୋଟ ଦିଅ; ନିଅ ପୁଣି ଶସ୍ତାସାର।
ବେପାରୀ ମାଗେ ଶୁଝଟ, ସୁଧମୂଳ କଳନରେ;
ମୁଁ ନାଚାର, ବିକିଲେ ବିକନ୍ତୁ
ତାଙ୍କ ମନ ଇଛା ଦରେ।
ରକ୍ଷାକର, ରକ୍ଷାକର
ମୋତେ ଗୋଡ଼ାଇଛି ମୋର ଦୈତ୍ୟ ଭୟଙ୍କର।

# ଦେହର ନିର୍ଲଜ ଭୋକ

ଗୁରୁପ୍ରସାଦ ମହାନ୍ତି

ଦେହର ନିର୍ଲଜ ଭୋକ ଭିତରେ ତ ନଷ୍ଟ ହୁଏ
ମନ ଆଉ ଆତ୍ମାର ପୃଥିବୀ
ଯେଣୁ ଏ ଦେହରୁ ଜନ୍ମ ପୁଣି ପାଏ ଅନ୍ୟ ଦେହ
ତା'ପରେ ତ ସମୟର ନିଷ୍ଠୁର ଜୀବନ ତୃଷା
ଅର୍ଥ ଆଉ ବ୍ୟବସାୟ ପରିବାର ରୋଜଗାର ଧରି
ମନର ତ ମୃତ୍ୟୁ ହୁଏ, ରହିଯାଏ ଲାଳସାର କ୍ଷୁଧା
ବାରମ୍ବାର ଫେରି ଏ ଦେହକୁ ଅନ୍ୟ ଦେହ ପାଇଁ।

ମୋ ଦେହରେ ସେ ଭୋକର ଅନୁଭୂତ ନିଷ୍ଠୁର ଲାଳସା
ଯେତେ ତୃପ୍ତି ପାଇଲେବି ପୁଣି ଫେରେ ଉଦ୍ବ୍ୟକ୍ତ ନିର୍ଲଜ
ଅନ୍ୟ ଏକ ଦେହ ପାଇଁ। ଜୀବନର ଯନ୍ତ୍ରଣା ସହିତ
ନିର୍ଲଜ ଏ ଭୋକର ବା ଶେଷ କାହିଁ ପରିତୃପ୍ତି କାହିଁ?

ନିର୍ଲଜ ମୋ ଏ ଦେହର ଭୋକ ରହୁ ତା'ଠାରୁ ଦୂରରେ
ମୋର ନଷ୍ଟ ଆତ୍ମା, ମନ ପୁଣି ଯଦି ଫେରିପାଏ ସ୍ୱାସ୍ଥ୍ୟ କେବେ
ସେଦିନ ମୋ ଭଲ ପାଇବାର
ସାର୍ଥକ ମୁହୂର୍ତ୍ତ ସବୁ ଆକାଶର ତାରାରେ ତାରାରେ

ପୃଥିବୀର ସବୁ ଘାସ ସବୁ ନଈ ସବୁ ଋତୁ ସବୁ ସଙ୍ଗୀତରେ
ତା'ମନ ଓ ଆତ୍ମାର ପୃଥିବୀକୁ ଫେରିଯିବ
ତା' ଦେହର ବସନ୍ତର ସବୁ ଫୁଲ ସବୁ ହସ ସବୁ ବସନ୍ତକୁ।

ତା' ଦେହର ବସନ୍ତ ବା ଯଦି କେବେ ବିପର୍ଯ୍ୟସ୍ତ ହୁଏ
ଅନ୍ୟ ଦେହ ଅନ୍ୟ କ୍ଷୁଧା ଅନ୍ୟ ଭୋକ ଅନ୍ୟ ଲାଳସାରେ
ତଥାପି ଏ ମୁହୂର୍ତ୍ତରେ ତା' ଦେହର ଅନାସକ୍ତ ବର୍ଷା ଓ ବସନ୍ତ
ରହିଥିବ ମୋ ସ୍ମୃତିରେ ଚିରଦିନ ପୃଥିବୀର କୁମାରୀତ୍ୱ ନେଇ।

# ନଈ ଆର ପାରି

ଭାନୁଜୀ ରାଓ

କାଚରେ ଝୁଲୁଥିବା ଛବି ପରି ନଈ ଆର ପାରି
ରହସ୍ୟର କୁହୁଡ଼ିରେ ମ୍ଳାନ,
କେହି ଜଣେ ଆଙ୍କିଅଛି ନୀଳିମାରେ
ବୁଡ଼ାଇ ବୁଡ଼ାଇ ପାହାଡ଼ର ଧାଡ଼ି,
ଦୂରର ଅଶ୍ୱତ୍ଥ ଡାଳେ ଶୁଖିଅଛି ଦ୍ରୌପଦୀର ଶାଢ଼ୀ ।

ତରୁଣୀ କଦମ୍ବ ପାଖେ ଭେଟିବାକୁ ପ୍ରତିଶ୍ରୁତି ଥିଲା,
କଥାଥିଲା ନଈଠାରୁ ଶିଖିବାକୁ କୋମଳ- ଗାନ୍ଧାର,
ତୋଳିନେବି କୁହୁଧ୍ୱନି ପ୍ରଚ୍ଛନ୍ନ କୋଇଲି କଣ୍ଠରୁ,
ଜହ୍ନ ପାଇଁ ବିଛାଇବି ହୃଦୟରେ ଜରୀର ଚଦର ।

ଏ ପାରିରେ ଇନ୍ଦ୍ରଧନୁ ମରିଯାଏ ଏନ୍ତୁଡ଼ି ଶାଳରେ
ମଣିଷର କ୍ଷୁଧା, କ୍ଷୋଭ ଆଉ ଯେତେ ପୁରାତନ ପାପ,
ତଣ୍ଟି ଚିପି ରୁନ୍ଧି ଦିଏ ଘନିଷ୍ଠ ଛାଇକୁ ବାରମ୍ବାର,
ଏ ପାରିରେ ଝୁରୁଥାଏ ଏକାକୀ ଚକୋର ।

ସେ ପାରିରେ ଯେତେ ସ୍ୱପ୍ନ,
ପ୍ରତ୍ୟାଶାର ହାତଧରି ଚାଲିଯିବି ଦିନେ ଆର ପାରି,
ଦିଗ୍‌ବଳୟ ବୋଳିହେବି ମୁଠା ମୁଠା ମାୟାବୀ ଅବିର,
ଠିକ୍ ଯାଇ ପହଞ୍ଚିବି ଚନ୍ଦନ ବନରେ,
ଯେଉଁଠାରେ ବସିଥିଲେ ଏକଦା ଈଶ୍ୱର ।

# ଦେବୀ

ଦୁର୍ଗାଚରଣ ପରିଡ଼ା

ତମେ
ଏକ ଦେବୀ
ଏବଂ ମୁଁ
ଏକ କାପାଳିକ :
ତମକୁ ସମର୍ପଣ କରିବା ଲାଗି
ମୋର ଅଞ୍ଜଳିରେ
ଦୁଇ ଭଣା
ଲକ୍ଷେ ନୀଳାବ୍ଜ :
ତମେ ହସିଲ
କହିଲ,
'ଆଉ' ?
ତା'ପରେ ଛିନ୍ନ କରି ଆଣିଲି
ରୁଧିରାକ୍ତ ମୋର ଦୁଇ ଆଖି ।
କହିଲି,
ନିଅ ।
ଏ କଅଣ
ବିକଳ୍ପ ହେଇ ପାରେନି
ନୀଳ ପଦ୍ମର ?

ତମେଇ ସେଇ
ଅର୍ଚ୍ଚନ-ପ୍ରିୟା
ଶୋଣିତ ସୋହାଗୀ
ରମଣଲୋଭୀ ଦେବୀ,
ଯାହାର
ଅନ୍ୟ ଏକ ନିବିଡ଼ ନାମ
ମୋର ଆକାଙ୍କ୍ଷା,
ମୋର ଲାଳସା ।
(ପ୍ରତି ମୁହୂର୍ତ୍ତରେ କିଛି ହେବାର, କିଛି ପାଇବାର) ।

# ଆତ୍ମପୀଡ଼ନ

ରବି ସିଂ

ରହିଲାନି କିଛି ବଞ୍ଚିବା ଉପାଦାନ
ଚାରିଦିଗ ଭରି ଜଳେ ମରଣର ଚିତା,
ବେଳୁବେଳ ଖାଲି ଲାଞ୍ଛନା, ଅପମାନ
କେତେ ମୁଁ ପଢ଼ିବି ପ୍ରବଞ୍ଚନାର ଗୀତା ?

ଜୀବନ-ମରଣ ମଧ୍ୟଭାଗରେ କବି
ବସି ବସି ଆଜି ପାଏନା କିନାରା, କୂଳ,
ଜଳି ବି ପାରୁନି, ପାରୁନାହିଁ ବି ତ ନିଭି
ଅଟ୍ଟହାସୁଛି ଚାରିଦିଗେ ମହାକାଳ ।

କ୍ଷତବିକ୍ଷତ ଆତ୍ମା ମୋ ମନ, ପ୍ରାଣ
କବିତା ଆଜି ମୋ ଧର୍ଷିତା ଦିବାଲୋକେ,
ତେବେ ବି ଦିନର ହେଉନାହିଁ ଅବସାନ
କ୍ରୌଞ୍ଚହନ୍ତା ବ୍ୟାଧ ମୋ କାବ୍ୟଲୋକେ ।

ମରଣବିଜୟୀ ସବୁ ତ ଗଲେଣି ମରି
ବସିଛି ଆଜି ମୁଁ ଦି'ହାତ ଆଖିରେ ଦେଇ,
ଦୁଃଖୀ ଅତୀତ ପଛୁ କହେ ଥରି ଥରି :
ସମ୍ଭାବନା ତୋ କିଛି ନାହିଁ, କିଛି ନାହିଁ ।

ଆଗାମୀ କାଲିର ମୁହଁ ତ ଯାଉନି ଦେଖା
ଅସୀମ ରୋଦନେ ଝାପ୍‌ସା ଦିଶୁଛି ସବୁ,
ଆତ୍ମକେନ୍ଦ୍ରୀ ସ୍ୱାର୍ଥର ବିଭୀଷିକା-
ମାନବିକତାକୁ କରି ସାଁରଲାଣି କାବୁ ।

ଘରେ ଓ ବାହାରେ ଚାରିଦିଗେ ଖାଲି ପଶୁ
ଶୋଷଣ, କଷଣ, ରାହାଜାନୀ ଦିବାରାତି,
ହେଉ ଏକାକାର ଆକାଶ ଅବନୀ ମିଶୁ
ଥମିଯାଉ ଏହି ଧରା ଆହ୍ନିକ ଗତି ।

ବିଦାୟ ବସୁଧା, ପତିତା ଗୋ ପିଶାଚିନୀ
କଳୁଷିତ ଦେହ, କଳୁଷିତ ତୋର ମାଟି.
ବିରାଟ ପାପର ଭାଟି, ତୋତେ ପାରିଲିନି
ଅନୁତାପେ ମରେ ନିଜ ଗାଲେ ମାରି ଚଟି ।

# ଚାରି ବଖରା ଘର

ଉମାଶଙ୍କର ପଣ୍ଡା

ପବନ ହାତ ଧରି ନିଏ ପବନକୁ
ଶୂନ୍ୟ ଏକ ବଖରାରୁ ଅନ୍ୟ ଏକ ଶୂନ୍ୟ ବଖରାକୁ।
ଅଲିଖିତ ଭାଗ୍ୟ ପରି ମାଙ୍କଡ଼ସା
ବୁଣି ଚାଲିଛି ନୂତନ ଜାଲ। ସବୁଠି କେବଳ
ହାହାକାର ପବନର ଶୁଖିଲା ପତ୍ରର।

ଅରଣ୍ୟର ପତ୍ରସବୁ ଜଳିଯାଏ ନିଆଁରେ
ଚାରିଆଡ଼େ ପୋଡ଼ା ଗନ୍ଧ
ଶବ୍ଦ ପୋଡ଼ାକାଠ ଓ ସମୟର।
ନିଛାଟିଆ ନଈକୂଳରେ
ବନ୍ଧା ହୋଇଥିବା ନାଆଟିରେ
ନାଉରୀ ନାହିଁ କି କାତ ନାହିଁ। ପାରିହେବା ପାଇଁ
ଲୋକ ନାହିଁ କୂଳରେ। ନଈରେ ବି ପାଣି ନାହିଁ
କେବଳ ଅଦ୍ଭୁତ ଫସଲରେ ଭରା
ଧୂ ଧୂ ବାଲିର ଚାରି ବଖରା ଘର।

ଗୋଟାଏ ବଖରାରେ
ପୋତି ହୋଇ ପଡ଼ିଥିବା ସ୍ୱପ୍ନ
ଓ ଶାମୁକାର କାରୁକାର୍ଯ୍ୟକରା ଭଙ୍ଗୁର
କାଚଗ୍ଲାସ, ଦ୍ରାକ୍ଷା ସୁରା। ଡ୍ରାଗନ୍‌ର ଛବି ଥିବା
ଧବ୍ ଧବ୍ ସାଦା ପ୍ଲେଟ, ଫ୍ଲାସ୍କ ଓ ଫୁଲଦାନୀ
ସଫେଦ୍ କାଚର ଗୁଟ୍‌କି ଖେଳୁଥିବା
ଛୋଟ ଝିଅର ଦସ୍ତାନା ଓ ଅଳତାଲଗା
ପାଦଚିହ୍ନ ଚାରିଆଡ଼େ।

ମଝିରେ କେବଳ ଶୂନ୍ୟ ସୁସଜ୍ଜିତ ଟେବୁଲ
ଅତିଥି ଅଭ୍ୟାଗତ କେହି ନାହାନ୍ତି
ଇତସ୍ତତଃ କେବଳ ମଳିନ ରୁମାଲ
ଓ ବାସୀଫୁଲ। ହଠାତ୍ ଯେ
କିଏ କେଉଁଆଡ଼େ ଚାଲିଗଲେ :

ନିଛାଟିଆ ନଈର ନୀଳ ଉପତ୍ୟକାକୁ କିମ୍ବା
ଭୋର୍‌ର ନିର୍ଜନ ଅରଣ୍ୟକୁ ।

ଅନ୍ୟ ଏକ ଘରର ଶିଉଳିଲଗା କାନ୍ଥରେ
ପିକାଶୋ, ଆରାଗଁ ଓ ଭ୍ୟାନ୍‌ଗଗ୍‌ର
ଚିତ୍ରପଟ ପରି ଅନେକ ସୂର୍ଯ୍ୟମୁଖୀ ଓ
ପ୍ରଜାପତିର ମାନଚିତ୍ର ।
ଅଦ୍ଭୁତ ଆଲୋକ, ଆଶ୍ଚର୍ଯ୍ୟ ଅନ୍ଧକାର
ଏବଂ ଅଚିହ୍ନା ମୁହଁର ଭିଡ଼ ଚାରିଆଡ଼େ ।

ପରିତ୍ୟକ୍ତ ନୌକାର ଦଦରା ମଙ୍ଗରେ
ଟୁବୁର୍ ଟୁବୁର୍ ପାଣିରେ ପାଦ ଲମ୍ବେଇ
ହସକୁରୀ ଝିଅଟି ବସିଛି ତ ବସିଛି
ସକାଳୁ ସଞ୍ଜଯାଏ । ସଫେଦ୍ କାଚର ଗୁଟ୍‌କି
ଖସି ଯାଇଛି ମଲା ନଈର ବାଲିଗରଡ଼ାରେ ।

ଶେଷ ଘରଟି ବି ଶୂନ୍‌ଶାନ୍
ବୁଢ଼ିଆଣୀ ଜାଲରେ ଝୁଲୁଛି
ମଲା ପ୍ରଜାପତିଙ୍କର ରହସ୍ୟମୟ ଶରୀର
କବରରେ ଅନାବନା ଫୁଲ, ପୋଡ଼ା ଧୂପକାଠି ।

ହୁଏତ କେତେବେଳେ ତମର
ନିଷ୍କପଟ ହସରୁ ଚେନାଏ ଖସିପଡ଼ି
କୁହୁକ ପାଚେରୀ ହୋଇଯାଏ । ଘର
ଚାରିକାନ୍ଥର ଏକାକୀ ଏକାକୀତ୍ୱ । ଘର
ଚାରିବଖରା ଘର । ଯେଉଁ ଘର ହୋଇଥାନ୍ତା
ତୁମର ବା ମୋର କିମ୍ବା
ଅସରନ୍ତି ସୁଖ ଓ ଦୁଃଖର ।

# ଭାବନା: ନବବର୍ଷର

ବିପିନ ବିହାରୀ ଖମାରୀ

ସମୟର ଅସରନ୍ତି ଢେଉ ଗଣି ଗଣି
ମୁଁ ନାବିକ
ନାଆ ବାହିଚାଲେ
ମୋ ଜୀବନପଥ ଧାରେ ଧାରେ
କେତେ କଣ୍ଟା କେତେ ଫୁଲ
କେତେ ପୁଣି
ସାହାରାର ବାଲି
ତଥାପି ଚାଲିଛି ମୁହିଁ ଅବିଶ୍ରାନ୍ତ
ସମୟର ଢେଉ ଗଣି ଗଣି।
ସକାଳ ହୁଅଇ ସଞ୍ଜ ରାତି ପାହି ପାହାନ୍ତି ବି ହୁଏ;
ଦିବସର ରୌଦ୍ର ଆଉ ରାତ୍ରିର ଜାଡ଼ିମା
ମୋ ମନରେ
କେତେ ହସ କେତେ କାନ୍ଦ
ଓ କେତେ କାଳିମା:

ମିନିଟ୍, ଘଣ୍ଟା, ଦିନ, ମାସ
ବର୍ଷ ବର୍ଷ ଧରି
ସମୟ-ସୁଅରେ ଭାସି
ଜୀବନର ନାଆ ବାହି ବାହି
ତଥାପି ଗଣୁଛି ମୁହିଁ
ସମୟର ଅସରନ୍ତି ଢେଉ:
ଗଛରୁ ଝରଇ ପତ୍ର
ଫୁଲ ଫୁଟି ଫୁଲ ଶେଷେ ଝରେ
ଆଜିର ବାଳୁତ ଶିଶୁ
ଯୁବା ହୋଇ ବୁଢ଼ା ପୁଣି ହୁଏ
ଓ ଶେଷେ ମିଳାଇଯାଏ
ସମୟର ଅସରନ୍ତି ଢେଉର ଫେଣରେ
ଜୀବନରେ ବର୍ଷଟିଏ
କାହା ପ୍ରାଣେ

କେତେ ଭାବ ଆଣେ
ମୋ ମନରେ ଆଜିର
ନବବର୍ଷ କିନ୍ତୁ
ଅହେତୁକ ଇନ୍ଦ୍ରଜାଲ ବୁଣେ ।

# ମୁଗ୍ଧ ହୋଇ ରହିଛି ଅନାଇ

## (ଟି.ଏସ୍. ଏଲିୟଟଙ୍କୁ)

ଶ୍ରୀନିବାସ ଉଦ୍‌ଗାତା

ତମେଇତ ବାଟ ଭାଙ୍ଗି
ବେରାସ୍ତାରେ ଚାଲିଗଲ...
ଅଗଣିତ ତମ ପଛେ ଆଗେଇଲେ କେଜାଣି କାହିଁକି
ଏବେ ସେଇ ରାସ୍ତାଇତ ପାଦ ପଡ଼ି କହେ...
ଯାଇ ହେବ ?

ତମେ ଦେଖିନକି କବି,
ସେ ରାସ୍ତାର ଦୁଇକଡ଼େ ଫୁଟିଲାଣି ଫୁଲ
ଅଗଣିତ ନାନାବର୍ଣ୍ଣ ଫୁଲର କିଆରୀ,
ମନୋହର ବର୍ଣ୍ଣର ମାଧୁରୀ
ରସ, ଗନ୍ଧ, ରୂପର ଚାତୁରୀ
ସୁକୋମଳ ଭାବର କାକଳି
ମୁଖରିତ କରେ ପୋଡ଼ା ଭୂଇଁ।
ରହିଯାଅ ଟିକେ ଆଉ....
କିମ୍ବା କହିଲ ହେ କବି—
ବେଳ ନାଇଁ ଆଉ ବେଳ ନାଇଁ
ତମର ଏ ନିମନ୍ତ୍ରଣ ରଖିବାର ପାଇଁ।

ହେ ବିରାଟ କ୍ରାନ୍ତଦର୍ଶୀ ଫିଟିଛି ଝରଣା ନିରମ୍ବୁ ମରୁରେ,
ହେ କବି, ଅହଲ୍ୟା ଭୂଇଁ ଫୁଟାଇଛି ଫୁଲ, ନାନା ଫସଲ,
ଅଭାବରେ ଭରିଅଛି ଭାବ,
ସେଇତ ଗରବ :
ହେ କବି ସେ ପୋଡ଼ା ଭୂଇଁ ମରୁ ହୋଇ ନାଇଁ
ସୁକୋମଳ ଶ୍ୟାମଳତା ତା'ର ସୀମା ସରହଦ ଛୁଇଁ
ଭରିଛି ଜୀବନ
ବିମୁଗ୍ଧ ସପନ...ପ୍ରାଣବନ୍ତ ମଧୁର ସ୍ପନ୍ଦନ।

ତମ ପଛେ ଠିଆ ହୋଇ ମୁଁ କହିଲି ଟିକେ ବେଳ ରହିଯିବା ପାଇଁ
ସେ ଯେ ନୂତନ ସୂର୍ଯ୍ୟର କିରଣରେ ଉଦ୍‌ଭାସିତ ହୋଇ
ହସିଥାନ୍ତା ଏ ମଧୁ ଧରତୀ
କହିଲ ତମେତ କବି,
ବେଳନାଇଁ ଆଉ ବେଳ ନାଇଁ..
ତମର ଏ ନିମନ୍ତ୍ରଣ ରଖିବାର ପାଇଁ
ତମେ ଧୀରେ ଚାଲିଗଲ,
ମୁଗ୍ଧ ହୋଇ ରହିଛି ଅନାଇଁ।

# ଶରତର ରାତିଟିଏ

ରମାକାନ୍ତ ରଥ

ହେ ଶୀତଳ ସମୁଦ୍ର; ମୁଁ ଆଜିକି ନ ଫେରେଁ
ତମ ନିକଟକୁ, ଆଜି ରାତିସାରା
ବୁଲୁଥାଏଁ କକ୍ଷଚ୍ୟୁତ ତାରାଙ୍କ ସାଙ୍ଗରେ ।

ନାନାଦି ଉଜ୍ଜ୍ୱଳବର୍ଣ୍ଣ ଚଢ଼େଇଙ୍କ ପ୍ରେତାତ୍ମା ସହିତ
ଆଜି ଲାଗି ଗପିବାକୁ ଅନୁମତି ଦିଅ,
ମୁଁ ଶୁଣେ ତାଙ୍କର ବାଷ୍ପରୁଦ୍ଧ ବର୍ଣ୍ଣନାରୁ
ଅଲୌକିକ ଘଟଣାରେ ପୂର୍ଣ୍ଣ ଦିନମାନଙ୍କ ବିଷୟ ।
କାଲି ପଛେ ମନଇଚ୍ଛା ଗର୍ଜନ କରିବ;
ଦିଗ୍‌ବିଦିଗେ ମାଡ଼ିଯିବ, ତମର ଭୋକିଲା
ଶୂନ୍ୟ ଅଭ୍ୟନ୍ତରକୁ ମୋ ସତ୍ତା ଶୋଷିନେବ,
ଆଜି କିନ୍ତୁ ଛାଡ଼ିଦିଅ ମୋ ଆତ୍ମାକୁ
ବୁଲିବାକୁ ନିର୍ଭୟ ଭାବରେ,
ଆଜି ସେ ପାଲଟିଯାଉ ସ୍ୱପ୍ନଟିଏ
ଅନ୍ୟ ଏକ ସୁନ୍ଦର ସ୍ୱପ୍ନରେ,
ଆଜି ସେ ନିଖୋଜ ହେଉ ଫୁଟି ଆସୁଥିବା
କଢ଼ିର ଆନନ୍ଦେ, ସନ୍ଧ୍ୟାବେଳ କ'ଣ
ଏ ଯାଏଁ ନ ଜାଣିଥିବା ଆଲୋକ ରଶ୍ମିରେ ।

ଜନ୍ମ ଜନ୍ମ ହତାଶାରେ ମୁଁ ଖୋଜିଛି
ସ୍ୱାଧୀନତା ଆଜିର ରାତିର
କଥା କହୁ ନ ଥିବା ଓ ପଲସ୍ତରା ଝଡ଼ି ପଡୁଥିବା
କାନ୍ଥର ସାମ୍ନାରେ ବସି ଯୁଗଯୁଗାନ୍ତର
ମୁଁ ଶୁଣିଛି ଝଣ୍ ଝଣ୍ ଆବାଜ ମୋ
ଭଙ୍ଗାରୁଜା ହାଡ଼ମାନଙ୍କର ।
ଶାଗୁଣାଙ୍କୁ ଦେଇଛି ମୋ ଶରୀର, ତମକୁ
ଦେଇଛି ମୋ ସାରା ଭବିଷ୍ୟତ,
ଆଜି କିନ୍ତୁ ଜାକର ଓ ଚନ୍ଦ୍ରକିରଣରେ

ବାସୁଥିବା ପୁନରୁଜ୍ଜୀବିତ
ଫୁଲଙ୍କର ମାଳଟିଏ ଏକମାତ୍ର ଇଚ୍ଛାର ବେକରେ
ପିନ୍ଧାଇ କରିବି ତାକୁ ବିସ୍ମୟାଭିଭୂତ ।

ମୋ ଅହଙ୍କାରକୁ ଆଜି ପ୍ରଥମଥର ମୁଁ
ପରିଣତ କରିଦେବି ଦୀର୍ଘ ନିଃଶ୍ୱାସରେ,
ସମୁଦାୟ ସମୟ ମୁଁ ଏକାଠି ଧରିବି
ଆଉ ଥରେ ତିଆରି ହାତରେ,
ଦୁଃଖକଷ୍ଟ ପୋଛିଦେବି ସ୍ୱରରୁ, ମୁଁ କେଉଁ
ଉଷ୍ଣମଣ୍ଡଳର ଦେଶେ ଗୋଟିଏ ଝରଣା
ହୋଇଯିବି, କୁଳୁକୁଳୁ ଶବ୍ଦ ଶୁଭୁଥିବ
କଥା କହୁଥିବା ବେଳେ, ବହୁଦିନୁ ଭଲ ପାଇବାର
ଉଲ୍ଲାସର ପ୍ରତିଧ୍ୱନି ପବନରେ ଭାସି ଆସୁଥିବ ।

ଆଜିକ ଏତିକି ଦିଅ, କାଲିଠୁ ପିଇବି
ରକ୍ତ ଓ ପାଉଁଶ ମିଶା ପାନୀୟ, କାଲିଠୁ
ପ୍ରତ୍ୟେକ ରାତି ତ ତମ ପାଖରେ କଟିବ
ମୋ ଆସନ୍ତା ଦିନ ସବୁ ଏକ ଅସରନ୍ତି
ଚୁମ୍ବନରେ ଅସରନ୍ତି ରାତିଟିଏ ହେବ ।

# ଭାରତବର୍ଷ : ୧୯୯୦

ମନୋଜ ଦାସ

ଅସୁମାରୀ କାଳ ତଳେ ହୋଇଥିଲା ଏକଦା ଉଦ୍ଭବ
ଭୀଷଣ ଉଚ୍ଚାଭିଳାଷୀ ଗୋଟିଏ ଦାନବ
ଜଣା ନାହିଁ ପିତାମାତା ରଖିଥିଲେ କିବା ନାମ ତା'ର
ମୃତ୍ୟୁପରେ ଇତିହାସେ ଖ୍ୟାତ ଭସ୍ମାସୁର ।
ଥିଲା ତା'ର ଅମାପ ଶକତି,
ସୃଜନ ସକାଶେ ନୁହେଁ, ଧ୍ୱଂସ ପାଇଁ,
ହାୟ ପରିଣତି :

ବିହ୍ୱଳ ଚକିତ ତା'ର ଆତ୍ମାଗୋଟି ବହୁ ଯୁଗ ପାଇଁ
ପାତାଳପୁରୀର କେଉଁ ଅନ୍ଧକୋଣେ ରହିଥିଲା ଶୋଇ
ହଠାତ୍ ତା ଅଟ୍ଟହାସ୍ୟ, ଅତି ଉଲ୍ଲସିତ,
ଦିନ ନାହିଁ, ରାତି ନାହିଁ, ଶୁଭେ ଅବିରତ :
ଶୁଣିବାକୁ ଚାହଁ ସେ ଧ୍ୱନି ଭୟଙ୍କର ?
ଶୁଣତେବେ ମନଦେଇ ଭାଷା ଅନ୍ତରଙ୍ଗ —
ବେତାର ଓ ଜନତାର, ତୁମର ଓ ମୋର :

କାହିଁ କେବେ ଋଷିବର ଜଠର ଅନଳେ
ଭସ୍ମ କରିଥିଲେ ଯେଉଁ ମାୟାବୀ ବିଲ୍ୱୋଳେ,
ଆଜି ଶୁଣି ବିଲ୍ୱୋଳର ଉଲ୍ଲସିତ ରବ
ଭାରତର ତନୁ ଚିରି ନିର୍ଗତ ସେ ଉତ୍‌ଫୁଲ୍ଲ ଦାନବ :

ଶୁଷ୍କ ଦୟାନଦୀ ପୁଣି ହେବ ସଞ୍ଜୀବିତ ?
କୂଳେ ତା'ର ଠାବ ହେବେ ଦିବ୍ୟ, ଧ୍ୟାନରତ
ଶାଶ୍ୱତ ଦଧୀଚି ?
ଆରମ୍ଭିବ ଆଗାମୀର ଚାରୁ କାର୍ଯ୍ୟସୂଚୀ ?

# ପ୍ରଦକ୍ଷଣ

ବ୍ରହ୍ମୋତ୍ରୀ ମହାନ୍ତି

ଅନାବିଳ ସ୍ନେହ ଟିକେ, ସ୍ୱାର୍ଥହୀନ ପ୍ରେମ ଟୋପେ,
ଶ୍ରଦ୍ଧା କଣିକାଏ ମାତ୍ର ପାଇବାର ପ୍ରୟାସ ମୋ ମଣିଷ ନିକଟୁ
ସମ୍ପୂର୍ଣ୍ଣ ହୋଇଛି ବ୍ୟର୍ଥ, ବଢ଼ାଇଛି ହାତ ଯେତେ ମୋର,
ସେ ହାତକୁ ଛୁଇଁ ନାହିଁ କେହି,
ପୁନର୍ବାର ଛୁଇଁବାର ଛଳନାକୁ ମୁଁ ଯେବେ
ଭାବିଛି ବୋଧେ ପାଇଗଲି ସବୁ,
ମୁଁ ତେବେ ଦେଖିଛି କେହି ପାଖେ ନାହିଁ,
ଶୂନ୍ୟତାର ହାହାକାର, ବ୍ୟବଧାନ ଅବ୍ୟାହତ ଅଛି।
ଏହିପରି ସାରା ଜୀବନଟା ଆମେ ସ୍ୱପ୍ନ ଦେଖୁ,
ସକଳ ହରାଇ ମଧ, ସବୁ ପାଇବାର,
କେତେ ପ୍ରବଞ୍ଚନା ଆଉ ହତାଶାର ମର୍ମନ୍ତୁଦ ଗୀତ,
ଆମକୁ ନ ପ୍ରଜ୍ୱଳିତ କରେ,
କେତେ ବ୍ୟର୍ଥତାର ବଜ୍ର ଆମକୁ ନ କରେ ବିପର୍ଯ୍ୟସ୍ତ,
ତଥାପି ନିର୍ଲ୍ଲଜ ସମ, ବ୍ୟାକୁଳ ନୟନେ ଆମେ
ଚାହିଁଥାଉ ସେମାନଙ୍କୁ ପାଇବାକୁ ପାଖେ।
ଅଥଚ ସେ ଆପଣାର, ଚିରଦିନ ଆପଣାର,
ତା' କଥାକି ସ୍ମରୁ ଆମେ କେବେ ?

ଯେ ସଦା ଅପେକ୍ଷା କରେ ଆମର ସାନ୍ନିଧ ଲାଗି ଆକୁଳ ଆଗ୍ରହେ,
ଅପଲକ ପ୍ରତୀକ୍ଷା ସେ, ତା'ରେ ଆମେ ଉପେକ୍ଷା ହିଁ କରୁ।
ତା' କରୁଣ କାନ୍ଦଣା କି କେବେ ଆମ୍ଭ ଶ୍ରବଣେ ପହଞ୍ଚେ ?
ସାରା ଜୀବନର ଏହି ଭୁଲ ଲାଗି ପ୍ରୟାଣ
ଆମର ସିନା ହୁଏ ଅଶ୍ରୁମୟ,
ପରମ ପୁଲକ କାହିଁ? ମୁଷ୍ଟିବଦ୍ଧ ବେନି କରେ
ଭରିଥାଏ ହାହାକାର ଗ୍ଲାନି ପରାଜୟ।

# କାଉ ପ୍ରଜାପତି ସମ୍ବାଦ

ଶରତଚନ୍ଦ୍ର ପ୍ରଧାନ

କାଉମାନେ
ଆକାଶରେ ଉଡ଼ିଲେ
ତୁମେ ନୂଆ ଭୟରେ
ଶିହରି ଉଠ,
କାଳେ କେଉଁଠି
ଡାମରା କାଉଟିଏ ଥିବ।

ପ୍ରଜାପତିମାନେ
ଫୁଲ ବଗିଚାରେ
ଦଳଦଳ ହୋଇ ବୁଲିଲେ
ତୁମେ କୁହ
ଅଶିଣ ହୁଏତ ଆସିବ,
କାଳେ କିଏ
ଠିକଣା ଖୋଜୁଥିବ।

ସବୁଠିତ
ସୁରଭିତ ପ୍ରଗଣା
ସବୁଠିତ
ଫୁଲର ଠିକଣା
ତାଙ୍କୁ କ'ଣ ଅଜଣା ... ....।

ମୁଁ କହିଲି
କାଉକୁ ମୁଁ
ଆଧାର ଦେବି;
ରାଉ ରାଉଆ ମନକୁ
ମୁଁ ପୋଷା ମନେଇବି।

ତୁମେ ହସିଲ
ଆଉ କହିଲ
କାଉ କ'ଣ
ପୋଷା ମାନେ :

ପ୍ରଜାପତି କ'ଣ
ଧରାଦିଏ ?
ସଞ୍ଜକୁ ଖୋଜିଲେ
ସକାଳ ଆସେ
ଖରାକୁ ଭଜିଲେ
ତାରାଟେ ଖସେ ।

ସବୁଠି
ଅଜବ ଭୟ
ସବୁଠି ନୀଳିମାମୟ
କାଉର ଡାକରେ ପ୍ରଜାପତିର ଡେଣାଟେ
ତୁମେ କେବେ ଦେଖିଚ
ଅଭଙ୍ଗା କଣ୍ଢେଇଙ୍କ
କଥୋପକଥନ;
କିମ୍ବା ଶୁଣିଚ
ଖିଲି ଖିଲି ଓଠରେ
ଚୁପ୍‌ଚାପ୍ ଢେଉପରି
କେତୋଟି
ନୀରବ କ୍ରନ୍ଦନ ?

କାଳ କାଳ ଧରି
ସେଇ ବୀଣା
ସେଇ ପଖଉଜ
ଧରିଚି,
ଚନ୍ଦ୍ର ସୂର୍ଯ୍ୟ ପରି
ଆଖି ଦୁଇଟି ବି
ବୋହିଚି ।
କିନ୍ତୁ କାହିଁ
ଡାମରା କାଉ
କାହିଁ ପ୍ରଜାପତିର ଡେଣା
ସବୁଠି ଦେଇ ପ୍ରାର୍ଥନା ।

# ଦୁଇଟି କବିତା

କମଳାକାନ୍ତ ଲେଙ୍କା

ମେଘର ପଲସ୍ତରା ଦିଆ ଆକାଶ
କେମିତି ଫେରାଇ ଦିଏ
ଇନ୍ଦ୍ରରାତିର ଧସ୍ତାଧସ୍ତି ଦୁଃଖକୁ ?
ଫଟା ଆର୍ଶିର ଦି'ଫାଳ ହସ
କେମିତି ଯୋଖିଦିଏ
ଟୁଂ ଟାଂ ରାତିର ସ୍ତବ୍ଧ ଚଇତକୁ ?
ଗୁମ୍‌ଗୁମ୍ ପବନର କାନ୍ଦଣା
କେମିତି ଚହଟେଇ ଦିଏ
ଉନ୍ମୁକ୍ତ ବେଣୀର ମଳୟକୁ ?

ନିରାପଦ ସ୍ଥିତିର ମୁହଁ
କେମିତି ଝାଳେଇ ଦିଏ
ପ୍ରିୟତମ ସୂର୍ଯ୍ୟର ଗାଲକୁ ?
କେମିତି ଉଚ୍ଛନ୍ନା ନଈ
ମୁହଁ ମୋଡ଼ି ଫେରିଯାଏ
ଆପଣାର ଢେଉର ଗର୍ଭକୁ ?
ବା କେମିତି ବିଛୁଡ଼ି ପଡ଼େ
ଫୁଲସବୁ ଫକ୍ କରି
ଡେଉଁଥିବା ମାଳୀର ହାତକୁ ?

## ଅଟକ ବନ୍ଦୀ

ଅଠାକାଠିରେ
ଲଟକି ଯାଇଥିବା
ଦକ୍ଷିଣା ପବନ ପରି
ଆଖି ପତାରେ
ବୁନ୍ଦାଏ ଲୁହ; ଯେ
ଟୁପ୍ କିନା ଟଳି ପଡ଼ିବା
ଅନେକ ଆଗରୁ
ମନେ ପକେଇ ଦିଏ —

ଦିନେ
କାଉଁରିଆ କାଠି ପରି
ବେହିସାବୀ ବସନ୍ତଟେ
ଫକୀର ବେଶରେ ଏମିତି
ଏଠିକୁ ଆସିଥିଲା, ଓ
ଏତକ ତା' ଗଲା ବେଳର
ରାଜପଥର ଐଶ୍ୱର୍ଯ୍ୟ :
ଭୋଗାଭୋଗର ଉଚ୍ଛିଷ୍ଟ ।

# ଆତ୍ମ-ନିବେଦିତା

ମନୋରମା ମହାପାତ୍ର

ଗୋଟିଏ ଆଶ୍ଳେଷ ଦେଇ
ବରଂ ତମେ ଶୋଷିନେଇ ଥାଆନ୍ତ ମୋ ପ୍ରାଣ,
ନିବେଦିତ ହେବା ପାଇଁ ସମୁଦ୍ୟତ ମୋ ଦେହକୁ
କରିଥାନ୍ତ ଟିକିଏ ଆଘ୍ରାଣ

ଭୁବନମୋହନ ପାଶେ
ମୋହିନୀ ରୂପରେ ଆସି
ମୁଁ କି କଲି ଦୋଷ ?
ଅନ୍ତର୍ଯ୍ୟାମୀ ତୁମେ ପରା
ନ ଚିହ୍ନିଲ ମୋ ଅନ୍ତର
ମର୍ଯ୍ୟାଦାର ମୂର୍ତ୍ତି ହୋଇ
ନିଷ୍ଠୁର ପୁରୁଷ ଭଳି ପ୍ରକାଶିଲ ରୋଷ

ସର୍ତ୍ତ ମୋ ନ ଥିଲା କିଛି
ପ୍ରୀତିରେ ନ ଥିଲା ଅବା
ଆନୁଷ୍ଠାନିକତା...
ଶିବଧନୁ ଭାଙ୍ଗିଲେ ହିଁ
ଗଳାରେ ଦିଅନ୍ତି ମାଳ,
ହୋଇଥାନ୍ତି ପରିଣୀତା
ନ ଥିଲା ଏଭଳି ଚୁକ୍ତି, ବାଧବାଧକତା

ମୁଁ ନ ଥିଲି ସୀତା;
ନିଷ୍କଳଙ୍କ ଥିଲା ମୋର ଆତ୍ମନିବେଦନ
ମୁଁ ଥିଲି ଅନନ୍ୟା
ଦେହନୁହେଁ, ବିଦେହ ଭାବନା ନେଇ ଆସିଥିଲି
ମୋ'ଛଡ଼ା କେ ଯୋଗ୍ୟତର
ବୈଦେହୀ ବୋଲାଇବାକୁ ?
ମତେ ପାଇଥିଲେ ତମେ
ହୋଇଥାନ୍ତ ବୈଦେହୀଶ
ଅଦ୍ୱିତୀୟ ନାରୀଟିଏ ହୋଇଥାନ୍ତା ଧନ୍ୟା ।

# କିପରି ଗାଇବି ଅବା

ନୃସିଂହ କୁମାର ରଥ

ନିର୍ଭୀକ ଆକାଶ ତଳେ
ଅକସ୍ମାତ୍ ବର୍ଷୁକୀ ମେଘର
ଅସଙ୍ଗତ ଶୋଭାଯାତ୍ରା
ଛାଇ ଦିଏ ଅସହାୟତାରେ ।

ଉଦ୍ବୁଦ୍ଧ ସ୍ମୃତିର ସ୍ରୋତରେ
ଭାସମାନ ଅସ୍ତିତ୍ୱକୁ
କିପରି ବା ମୁକ୍ତି ଦେବି
କରୁଣ ବିଭୀଷିକାର
ନିର୍ମମ ଓ ବିଦ୍ରୂପ ହସରୁ ?

ନିର୍ବିବାଦରେ
କିପରି ପହଞ୍ଚିପାରିବି
ନିଷ୍ପ୍ରାଣ ଜଡ଼ ବଧିର ପାଖରେ ?
କିପରି ପାରିବି ରୋଧି
ଆର୍ଦ୍ର ଆଖି ଅଶ୍ରୁ ଉଦ୍‌ବେଳନ ?

କିପରି ଅବା ଦେଇ ପାରିବି
କାକୁସ୍ଥ ମୂକ ମୁହଁରେ
ଆତ୍ମପ୍ରକାଶର ସାବଲୀଳ ଭାଷା ?

ଲୁହର ଉପତ୍ୟକାରେ
ମୃତ୍ୟୁ ମୂଲକର ଏଇ
ଅସହିଷ୍ଣୁ ଅନ୍ଧ ଗଳି
ଅବିଶ୍ୱସ୍ତ ରାଜରାସ୍ତା
ଅନାତ୍ମୀୟ ପାତ୍ର ମନ୍ତ୍ରୀ
ପାରିଷଦବର୍ଗଙ୍କ ମେଳରେ
କିପରି ଗାଇବି ଅବା
ଅର୍ଥବାନ୍ ଗୀତ ଜୀବନର ?

# କାଗଜ ଡଙ୍ଗା

ବିବେକ ଜେନା

କବିତାର ଚିଠା ନେଇ ମୋର
ତୁମେ କାଗଜର ଡଙ୍ଗା କର
ଆଉ ତା'କୁ ଭସାଇ ବି ଦିଅ ନେଇ ସମୟ ସ୍ରୋତରେ।
ତା'ପରେ ସେ ଭାସି ଭାସି ମୋ ଦୁଃଖର ଅନ୍ଧାର ଭିତରେ
ପୁଣି କେତେ ବର୍ଷା ଆଉ ରାତି
ଆଉ କେତେ ନରମ ପାହାନ୍ତି
ସବୁଠାରେ ଭିଜି ଭିଜି କେବେ ହେଲେ ସମୟର ଶେଷେ
କେଉଁ ଦୂର ସୂର୍ଯ୍ୟାସ୍ତରେ ଯେଉଁଠାରେ ଘାସଫୁଲ ଫୁଟେ
ପହଞ୍ଚିବ କେତେଦୂରେ ଯାଇ
ଯେଉଁଠାରେ ଆଉ କେହି ନାହିଁ।
ଶେଷ ଘାସଫୁଲ ସବୁ ଯାଇଥିବ ସେତେବେଳେ ଶୁଖି
କାଗଜ ଡଙ୍ଗାରେ ମୋର ମୃତଦେହ ଦେଖି।

କେହି ଜାଣିବେନି କେବେ ଅଧାଲିଭା ଓଦା ଅକ୍ଷରରେ
ଯାହା ଯାହା ହୋଇଥିବ ଲେଖା ସେଇ କାଗଜ ଉପରେ
ତାକୁ ତୁମେ ଆଉ କେବେ ପାଇ
ସେଇଠାରୁ, ଯେଉଁଠାରେ ଘାସଫୁଲମାନଙ୍କ ସମାଧି
ଟିକେ ପଢ଼ି ଆନମନା ହୋଇ
ପୁଣି ଥରେ ଫିଙ୍ଗି ଦେବ ହତାକୋଣେ ମୋଡ଼ିମାଡ଼ି ଦେଇ।

ତୁମେ ବା କାହିଁକି ତା'କୁ ଆଣିଥାନ୍ତ ଧୂଳି ସବୁ ଝାଡ଼ି
ତୁମେଇ ତ ଅଧାଲିଭା ସେଇ ସବୁ କବିତାର ଧାଡ଼ି।

# ଭାଙ୍ଗିପଡୁଥିବା ଦୁର୍ଗର

ଜଗନ୍ନାଥ ପ୍ରସାଦ ଦାସ

ଭାଙ୍ଗିପଡୁଥିବା ଦୁର୍ଗର ଚାରିକାନ୍ଥ ଭିତରେ
ଚାଲ ବିରକ୍ତ ଦିନର ଧ୍ୱଂସ ସ୍ତୂପକୁ କବର ଦବା
ଉଦ୍‌ବିଗ୍ନ ମନର ଶୂନ୍‌ଶାନ ଆକାଶରୁ
ଦୀର୍ଘଶ୍ୱାସର ଖରାକୁ ତୋଳିନେବା
ଅନୁଶୋଚନାର ପ୍ରଗଲ୍‌ଭ ଉପତ୍ୟକାରେ
ପରିତ୍ୟକ୍ତ ସୂର୍ଯ୍ୟାସ୍ତକୁ ସାନ୍ତ୍ୱନା ଦେବା
କିଛି ସମୟ ଆହୁରି ଏପରି ବିତିଯାଉ
ମେଘ ସହିତ କିଛି ଯୁକ୍ତି କରି
ଦିଗ୍‌ବଳୟ ସହିତ ହାତ ମିଳାଇ
ପାହାଡ଼କୁ କ୍ରୋଧାନ୍ୱିତ ଆଖିରେ ଦେଖି
ଏବଂ ନଦୀକୁ କିଛି ଆଶ୍ୱାସନା ଦେଇ
ସୂର୍ଯ୍ୟାସ୍ତର ଅଭିଶାପରେ
ଆକାଶ ତରଳିଗଲେ
ଖୋଜୁଥିବା ଦିନସବୁ
ଇନ୍ଦ୍ରଧନୁକୁ ବିଦାୟ ମାଗିବେ,
ଜହ୍ନ ଆଲୁଅର ଅବସନ୍ନ ଲହରୀ
ଅଶାନ୍ତ ଦିଗ୍‌ବଳୟରୁ ଫେରିଯିବ।
ଗଛର ଗହଳ ପତ୍ରରେ
ଅଟକି ରହିବ ଅମାବାସ୍ୟାର ଆଶଙ୍କା
ପ୍ରାୟଶ୍ଚିତ୍ତର ଦୂତମାନେ ଆସିବେ
ସାତ ରାତିର ଅନ୍ଧାର ନେଇ।

କେହି ବି କ୍ଷମାର ଉପଯୁକ୍ତ ନୁହନ୍ତି
ଆସ ବତୀଖୁଣ୍ଟର ଆଲୁଅକୁ
ଗଳା ଚିପି ହତ୍ୟା କରିବା
ଛାଇମାନଙ୍କୁ ବିନ୍ଧ କରି ରଖିବା କାନ୍ଥ କଣ୍ଟାରେ
ଶବ୍ଦମାନଙ୍କୁ ଦ୍ୱୀପାନ୍ତରିତ କରି
ସାରା ସହର ଉପରେ
ଭୟର ଚାଦର ଟାଣି ଦେବା।

ଅଜ୍ଞାତ ଅରଣ୍ୟର କୃତଘ୍ନତାରୁ
ସବୁ ଦୂରତ୍ୱ ପାଦଶବ୍ଦ ହୋଇ ପାଖକୁ ଫେରିବେ
ପଶ୍ଚାତ୍ତାପର ନିରନ୍ଧ୍ର ଅନ୍ଧାର ଘେରିଯିବ
ସମୁଦ୍ର ଓ ଦିଗ୍‌ବଳୟ ସମେତ
ପୃଥିବୀର ସମସ୍ତ ଆନନ୍ଦକୁ।

ତମେ କ'ଣ ଦୁଃସାହସ ନେଇ
ମୋ ପାଖକୁ ଆସିପାରିବ ଏତେବେଳେ
ମୋର ପାପରେ ଅଂଶୀଦାର ହେବା ପାଇଁ ?

# ଦୁଇଟି ସନେଟ୍

ଶ୍ରୀ ବିଭୂଦତ୍ତ ମିଶ୍ର

[ଏକ]

ଜରାର କରାଳ ଛାୟା ଏଇ ଦେହ ମନର ଆକାଶେ
ଯେ' ଦିନ ଆସିବ ଘେରି ମରଣର ମହାଶଙ୍ଖ ବାଇ,
ଯୌବନର ସବୁ ସ୍ୱପ୍ନ, ସୁଖ ଶିରୀ ଗଉରବ ଗାନ
ମହାକାଳ ଲହରୀରେ ଯିବ ଯେବେ ନିମିଷେ ମିଳାଇ।

ଏ ନୀଳ କନ୍ତଳ କେଶେ ବିଳସିବ ଧବଳ ବେଦନା
ଗଳିତ ଦଶନ ନେତ୍ର ଜ୍ୟୋତିହୀନ ସ୍ଥିର ଅଚଞ୍ଚଳ
ନଥିବ କମ୍ପନ ଅବା ଲୋମେ ଲୋମେ ମଧୁ ଶିହରଣ
ଉଦ୍ଦାମ ଉଦ୍ଧତ ଏଇ ତନୁ ହେବ ଶିଥିଳ ଶୀତଳ।

ଆଜିର ପ୍ରମତ୍ତବକ୍ତା ହରାଇବ ବାଗ୍ମିତାର ତେଜ
ଏ ମୁଗ୍ଧ ବିଧୂର କବି ଲେଖନୀରୁ ଛନ୍ଦ ଯିବ ମରି
ଆଖିରୁ ଲିଭିବ ସ୍ୱପ୍ନ, ଉଡ଼ିଯିବ କଳ୍ପନାର ପକ୍ଷୀ
ପ୍ରୀତି ଢଳ ଢଳ ପ୍ରାଣପାତ୍ରୁ ଯେବେ ରସ ଯିବ ସରି।

ସେ'ଦିନ ଆନନ୍ଦେ ଥରି ପ୍ରସାରିଣ ବେନିକର ମୋର,
କହିବି- "ସ୍ୱାଗତ, ପ୍ରିୟ? ଏ ଜୀବନ ଅନ୍ତିମ ଦୋସର।"

[ଦୁଇ]

ଯେ'ଦିନ ଆସିବ ଡାକ, ଯିବା ପାଇଁ ଏ ଧରଣୀ ଛାଡ଼ି
ଭୁଲିସବୁ ମାୟା ମୋହ, କାଟି ଯେତେ ବନ୍ଧନର ଡୋରି
କେତେ ପ୍ରିୟ ପରିଚିତ. ସଖାସାଥୀ, ବାଦୀ ପ୍ରତିବାଦୀ,
କେତେ ହସଲୁହେ ଭରା ଧୂଳିର ଏ ମହାସ୍ୱପ୍ନପୁରୀ।
ସହସ୍ର ଜଞ୍ଜାଳେ ଦଗ୍ଧ ବେଦନାରେ ବିଦୀର୍ଣ୍ଣ ଏ ପ୍ରାଣ
ଅୟୁତ ସପନେ ମୁଗ୍ଧ, ପ୍ରଣୟର ପ୍ରଲେପେ ଶୀତଳ
କେତେ ମଧୁ ଅନୁଭୂତି, କେତେ ସ୍ନେହ ପ୍ରୀତିର ମାଧୁରୀ
ସବୁ ତ ପଡ଼ିବ ମନେ ହେବ ନେତ୍ର ଲୋତକେ ସଜଳ।

ସେତେବେଳେ ତୁମ ସହ ଦେଖା ଯଦି ହେବ ଏ କବିର
ନିବିଡ଼ ଆଶ୍ଳେଷେ ଧରି ବୁକେ ମୋର ଶେଷଥର ପାଇଁ
ଧୋଇବି ଆଖିର ଲୁହେ ତୁମ ବୁକୁ ବଦନ କପୋଳ
କହିବି- ''ବିଦାୟ ଦିଅ ଏ ଜୀବନେ ଦେଖା ଆଉ ନାହିଁ।''
ପୁନର୍ଜନ୍ମ ସତ ଯଦି ତାହା ହେଲେ ଆର ଜନମରେ
ପୁଣି ଆମ ଭେଟ ହେବ ଅନାଗତ ଫାଲଗୁନ ସକାଳେ।

# ଓଟ

ଶ୍ରୀ ବ୍ରଜନାଥ ରଥ

ହେ ମରୁସାଗରର ଜୀବନ୍ତ ଜାହାଜ :
କେତେ କାଳ ଏହିପରି
ଚାଲୁଥିବ ବୋହି ବୋହି
ମରୁ ଯାତ୍ରୀ ବଣିକର ବୋଝ ?

ସହି ସହି ବାଲି ଝଡ଼
ଶାଣିତ ବର୍ଚ୍ଛାର ମାଡ଼
ବିଷୁବ ସୂର୍ଯ୍ୟର,
କେତେକାଳ, କହ କେତେକାଳ
ଅବଶ ଶିଥିଳ ପାଦେ
ଚାଲୁଥିବ ମୌନମୁଖେ
ଠେଲି ଠେଲି ବାଲିର ତରଙ୍ଗ
କେତେ ରାତ୍ରି ସନ୍ଧ୍ୟା ଓ ସକାଳ ?

ଜଠରେ କ୍ଷୁଧାର ବହ୍ନି
ପିଠିରେ ତ ପଣ୍ୟବାହୀ ବୋଝ;
ଗୁରୁଭାର ବୋହି ବୋହି
ମେରୁଦଣ୍ଡ ଗଲାଣିତ ନଇଁ
କୁଞ୍ଚିତ ପାହାଡ଼ ଭଳି
ଉଠିଲାଣି କୁଜ ।

ନାସାରନ୍ଧ୍ରୁ ଛୁଟେ ତମ
ଲାଭା ଭଳି ଗରମ ନିଃଶ୍ୱାସ,
ଢୁଲୁଢୁଲୁ ଆଖି ତଳେ
ଦିଗନ୍ତ ପ୍ରସାରୀ ମରୁ
ପ୍ରାନ୍ତର ଯେ ଜଳେ
ଖସିପଡ଼େ ସମ୍ମୁଖରେ
ଧୂ-ଧୂ ଜ୍ୱଳନ୍ତ ଆକାଶ ।

ପିଠିରେ ପଣ୍ୟର ବୋଝ
ବୋହିଲେ ବି ତୁମେ

ସେଥିରେ କି ଯାଏ ଆସେ ତୁମ ?
ବଣିକର ଲାଭାଂଶର ତାଲିକାରେ କେବେ
ଲେଖାହେବ ନାହିଁ ତୁମ ନାମ ।

କେବଳ ତୁମର କାମ
ନିପଟ ନିର୍ବୋଧ ଭାବେ
ଓଜନିଆ ବୋଝକୁ ବୋହିବା;
କେବଳ ତୁମର କାମ
ନିଜର ଯନ୍ତ୍ରଣା ଏବଂ
ନିଜ ଦୁଃଖ ନିଜେହିଁ ସହିବା ।

ନିଜେ ସହି ବାଲିଝଡ଼,
ବହ୍ନିମାଡ଼ ଶାଣିତ ସୂର୍ଯ୍ୟର
କୁହ ତୁମେ ଆଉ କେତେକାଳ
ସଙ୍ଗୋପନେ ନିଜ ପେଟ ତଳେ
ଦେଉଥିବ ଲାଭଖୋର ବଣିକକୁ ଅଭୟ ଆଶ୍ରୟ,
ଆପଣାକୁ ଆପେ କରି
ଦିବାରାତ୍ରି ତିଳେ ତିଳେ କ୍ଷୟ ?

ଏଥର ନିଜର ଦୁଃଖ ବୁଝିବାକୁ ଚେଷ୍ଟାକର ନିଜେ
ଚେଷ୍ଟାକର ବୁଝିବାକୁ
ଆପଣାର ଦୟନୀୟ ଦୁଃଖର କାରଣ;
ଜାଣିରଖ, ବିନା ବାଧା, ବିନା ପ୍ରତିବାଦେ
ସବୁକିଛି ସହିବାର
ଅନ୍ୟନାମ ଅଟଇ ମରଣ ।

ନିରୀହତା, ମୂର୍ଖତାର ଅଟେ ନାମାନ୍ତର;
ତେଣୁ ଆଜି ଫିଙ୍ଗି ଦିଅ
ପୃଷ୍ଠଦେଶୁ ବଣିକର ପଣ୍ୟବାହୀ ବୋଝ
ଶୋଷଣର ଯେତେ ଗୁରୁଭାର :
ଏବଂ ଲଘିଚାଲ
ଦୁର୍ଲଙ୍ଘ୍ୟ-ଦୁସ୍ତର
ସୁଦୂର ଦିଗନ୍ତ ବ୍ୟାପୀ
ଧୂ-ଧୂ-ମରୁର ପ୍ରାନ୍ତର ।

# ଖରାବେଳ

ସୀତାକାନ୍ତ ମହାପାତ୍ର

ଏଥରକ ବଗିଚାରେ ନୁହେଁ।

ଦୃଶ୍ୟପଟ, ଛୋଟ ମୋ କୋଠରୀ
ଅକାତକାତ ପାଣିରେ ହୁଲିଡଙ୍ଗା ପରି
ବିଛଣାରେ ମୋ ପୁରୁଣା ଦେହ
ଖାଁ ଖାଁ ଖରାବେଳ ଧକୋଉଚି କୁକୁର ଜିଭରେ
ଚାରିଆଡ଼େ କୃଷ୍ଣଚୂଡ଼ା, ଲହୁତଳେ ଶୁଖୁଥିବା ଲୁହ।

ହଳଦିଆ ନିଆଁର ତୀକ୍ଷ୍ଣ ବରଷା
ଧୂଳିମିଶା ପ୍ରଚଣ୍ଡ ଝଡ଼ରେ
ଶୁଖିଲା ଚମ ଦେହରୁ ଛାଲିହୋଇ
ପତ୍ରପରି ଉଡ଼ିଯାଇ ପାରେ;
ପାମ୍ପରା ହାଡ଼ର ପ୍ରେମ୍ ସୂର୍ଯ୍ୟର ଧକ୍କାରେ
ମସ୍‌ମାସ୍ ଚୂନା ହୋଇପାରେ।

ସବୁ ମିଶିଯାଇଥିବ :
ବହୁ ବର୍ଷତଳେ ଦେଖିଥିବା
ମନେପଡ଼ି ପଡୁ ନ ଥିବା ସପନ
କେଉଁ ଏକ ଫଗୁଣ ସକାଳେ
ଖରା ଏବଂ କାଉଟିର କା' କା'
ଘରେ କେହି ନ ଥିବା ଧାରଣା
ସମୁଦ୍ରର ନେଳିଆଖି, ନାମହୀନ ଦ୍ୱୀପର ନିର୍ଜନ
ଚିରକାଳ ଦିଗ୍‌ବଳୟ କୁହୁଡ଼ିରେ ବୁଡ଼ିଥିବା
ଶୃଙ୍ଗର ଶ୍ୱେତ-ଶୀତଳ ଆମନ୍ତ୍ରଣ
ଆକାଶର ସ୍ମୃତି-ସିକ୍ତ ମନ।

ଏମିତିକା ଅବେଳରେ ସେ ଆସିବେ
ଖାଲିଗୋଡ଼େ ଚାଲି ଚାଲି
ସେତେବେଳେ କେହି ନ ଥିବେ ପାଖରେ
ସ୍ତ୍ରୀ ବୁଲିଯାଇଥିବେ ପଡ଼ିଶା ଘରକୁ
ଔଷଦ ଖୁଆଇ ସାରି

ପିଲାମାନେ ଯାଇଥିବେ ସ୍କୁଲକୁ ଓ
ଚାରିଟା ବାଜିବା ପାଇଁ ବେଶ୍ ଡେରି ଥିବ;
ଚାକର ଘୁମାଉଥିବ ସବୁଦିନ ପରି ଏବଂ
ଘରବାଡ଼ି କାଛବାଡ଼ ଅସରନ୍ତି ବାଲିପରି
ଯାହା ମନେହେବ।

ତତଲା ବାଲି ରାସ୍ତାରୁ ଘରକୁ ଦଶୋଟି ଖୋଜ
ଛତାବାଡ଼ି ଡେରିଦେଇ ଦାଣ୍ଡ ବାରଣ୍ଡାରେ
ଆଶ୍ୱସ୍ତ ହୋଇବେ ସିଏ, ଯାହାହେଉ
କୌଣସିମତେ ମଣିଷ ପହଞ୍ଚିଲା ଠିକଣା ଜାଗାରେ।

ଚାଉଁକରି ଛାଇନିଦ ଛତର- ଛାଉଳ ହେବ
ଉଠିବସି ମୁଁ କହିବି ଏଇଥିପାଇଁ ତ
ଏତେ ଖରା ସତ୍ତ୍ୱେ ଖୋଲା ରଖିଥିଲି କବାଟ ଦୁଆର।
ଗମ୍ଭୀର ମୁହଁରେ ହସ, ପଚାରିବେ ଡରମାଡୁଛି କି ବାବୁ
ମୁଁ କହିବି କାଇଁ? ନାଇଁ ତ।

ତା'ପରେ ମୁଁ ବ୍ୟସ୍ତ ହେବି
ପାଣି ଢାଳେ ଦବାକୁ କେହି ନାହାନ୍ତି
ମୁହଁ ଜଳି ଯାଇଥିବ ଏ ଝାଞ୍ଜି ଖରାରେ
ପଖାଳ ଓ ଶାଗଭାଜି ଅନ୍ତତଃ ବଢ଼ାହୁଅନ୍ତା
କୃଷ୍ଣ ଯଦି ସୁଦାମାର ଘରେ।

ମୋ ବ୍ୟସ୍ତତା ଦେଖି ସିଏ ସାମାନ୍ୟ ବିବ୍ରତ ହେବେ ଟିକିଏ ହସିବେ
ସେ ହସ ଶୀତଳ ଜହ୍ନପରି ଯିବ ଟିକିଏ ମାଣ୍ଟେଇ
ଓଠକଡ଼େ। ହଠାତ୍ ଦୁଶିବ (ସତରେ କି ମୋ ଆଖି ସେମିତି
କିମ୍ବା ମୋର ଭୁଲାମନର କଳ୍ପନା)
ତାଙ୍କ ଆଖି ଅଳ୍ପ ଟିକେ ଓଦାଓଦା;
ସେ ମୁହୂର୍ତ୍ତ କଟିଯିବ
ସେ କହିବେ ଠିକ୍ ଅଛି ଆଉଥରେ ଆସିଲେ ସେ ସବୁ
ଆଜି ଟିକେ ତରତର ଅଛି, ଚାଲ ଯିବା।

କାହାରିକୁ ଖବର ଦେବାକୁ ଟିକିଏ ବେଳ ନ ଥିବ
ସ୍ମୃତିକୁ ଉଖାରି ଶତଚେଷ୍ଟା ସତ୍ତ୍ୱେ ପିଲାଙ୍କ ସ୍କୁଲର
ଟେଲିଫୋନ ନମ୍ବର ମନେ ହେବନି
କାହା ଘରକୁ ସେ ଗଲେ 'ହେଇଟି ଆସୁଚି' କହି
ସେ କଥା ବି ପଡ଼ିବନି ମନେ
ଜାଣିଥିଲି ବନ୍ଧୁ ମୋର ପହଞ୍ଚିବେ ଏମିତିକା ବେଳେ।

ପିଲେ ଆସିଲେ ବା ସିଏ ଆସିଗଲେ ଆମେ ଯିବା
କହିବାକୁ ପାଟି ଫିଟିବନି । ମାଡ଼ି ପଡୁଥିବ ଖାଲି,
ଏମିତିକା ତୁଚ୍ଛା ସ୍ନେହ କଥା କ'ଣ କୁହାଯାଏ
ଏଡ଼େ ବଡ଼ ମଣିଷ ଆଗରେ
ଏତେ ଛୋଟ ଦୁର୍ବଳତା ଖୋଲାଯାଏ
ତା' ସମାନ ବନ୍ଧୁର ସାମ୍ନାରେ ।

କଳା ଅନୁଭବ ସବୁ ସମୁଦ୍ରର ଢେଉ ପରି ଭିତରୁ ଆସିବେ
ଫେରିଯିବେ ଧକ୍କା ଖାଇ ତଣ୍ଟିପାଖ ବାଲି ବିସ୍ତାରରେ
ସହସା ପେନ୍‌ସିଲ୍ କିମ୍ବା କଲମଟେ ମିଳିବନି
ଦୁଇଧାଡ଼ି ଗାରେଇ ଦେଇଯିବାକୁ ସାମାନ୍ୟ ଖବର କିଛି
ଭୁଲିଥିବା ଦଦରା ଶବ୍ଦରେ ।

ଖାତା ବହିସବୁ ସେମିତି ହିଁ ଚାହିଁଥିବେ ଟେବୁଲରୁ
ମୋ ବିଭିନ୍ନ ଛାଇ ଏବଂ ପିଲା ଓ ତାଙ୍କର
ଛାଇମାନେ ଚାହିଁଥିବେ ଭୂତପରି ମଇଳା କାନ୍ଥରୁ
ହଠାତ୍ ଉଠିବସିବି ଓ ଭୂତ ଲାଗିଲା ପରି
କହିବି, ତା'ହେଲେ ଚାଲ
ଧୂଳିର ସମୁଦ୍ର ତଳେ କେଡ଼େ ଚିଟା ଲାଗିଲାଣି
ବସି ବସି ଆଉ ମୋତେ ଲାଗୁନାଇଁ ଭଲ ।

ପିନ୍ଧିଥିବା ସେଇ ଗେଞ୍ଜି ପାଇଜାମା
ପିନ୍ଧି ମୁଁ ବାହାରି ଯିବି, ଖୋଲାଥିବ ଘର
ହାତ ଧରାଧରି ହୋଇ ଦୁଇ ବନ୍ଧୁ
ଡଗଡଗ ଚାଲିଯିବୁ ଖରାର ସହର ।

# ଆଖିରୁ ଆଖିକୁ ନାଚେ ମୃତ୍ୟୁ

ଦୀପକ ମିଶ୍ର

ରଙ୍ଗସଭା
ମଞ୍ଚରେ ବସିଛି କଂସ
ବସିଛି ତା' ବିଚାର ମହିମା ।

ଝଲମଲ ରଙ୍ଗସଭା
ଝଲମଲ ମଞ୍ଚ ଓ ଆସନ
ତହିଁରେ ଝଲମଲ କଂସର ବାହୁବଳ
ଝଲମଲ ମୃତ ସେନାନୀଙ୍କ ଦଳ;
ମଞ୍ଚରେ ଝୁଲୁଛି କଂସ
ମଞ୍ଚ ଝୁଲେ କଂସକୁ ଆବୋରି
କେତେବେଳେ ନିଶ୍ଚଳ ନିଥର କଂସ
କେତେବେଳେ ଦିବାସ୍ୱପ୍ନ ଦେଖି ଉଠେ ଥରି ।

ମଞ୍ଚ ତଳେ ଉଭାହେଲା
ଅଦ୍ଭୁତ ଖଣ୍ଡେ ଛୋଟ ମେଘ
ତା' ଛୋଟ ଓଠରେ ଥିଲା ଓଦା ବିଜୁଳିର ହସ
ତା' ଆଖିରେ ଟହଲୁଥିଲା ଓଦା ନୀଳର ବିଭାସ
ସତେ କି ସମୁଦ୍ର ସବୁ ଏକଜୁଟ ହୋଇ
ଚୁପ୍‌ଚାପ୍ ଶୋଇଛନ୍ତି ଗଭୀର ନିଦରେ ।

କଂସ ବିଚାରେ ମନେ ମନେ
ଏକି ମେଘଥିଲା କେଉଁ ଆକାଶର କୋଣେ,
ପବନ ପରିକା ବୁଲାଇ ମୋ' ହାତ
ସଫା କରିଦେବି ଶୂନ୍ୟବାଣୀର ଇଙ୍ଗିତ ।

ମୋ ରାଜ୍ୟର ଆକାଶରେ ଲୋଡ଼ା ନାହିଁ
ମେଘର ସମ୍ଭାର
ମୋ ରାଜ୍ୟର ମାଟିରେ ଲୋଡ଼ା ନାହିଁ
ଶସ୍ୟ ପୂର୍ଣ୍ଣ ସବୁଜ କେଦାର
ଲୋଡ଼ା ନାହିଁ ଇନ୍ଦ୍ରଧନୁ
ଲୋଡ଼ା ନାହିଁ କେଉଁ ଛାୟାପଥ;

ଚାରିଆଡ଼େ ଖାଲି ମୁଁ
ଖାଲି ମୋ'ର ଅନାହତ ପ୍ରତିବିମ୍ବ
ଅନାଘ୍ରାତ ରକ୍ତପଦ୍ମ ପରି ହେଉ ବିକଶିତ ।

ରାଜୋଚିତ ଥିଲା କଂସର ଆଦେଶ
ସେଥିରେ ଛଳନା ନାହିଁ, ନ ଥିଲା
କୌଣସି ଚିହ୍ନ ଶ୍ମଶାନ-ବୈରାଗ୍ୟ,
ତଥାପି ତା'କୁ ଜଣାଗଲା ସେ ଯେମିତି
ଦୀର୍ଘ ଏକ ସ୍ୱପ୍ନର କବ୍‌ଜାରୁ କ୍ରମଶଃ ଆସୁଛି ମୁକୁଳି
କିବା ତା'ର କେଉଁ କାଳର ସ୍ୱପ୍ନ
ମେଘ ହୋଇ ମୁକୁଳି ଯିବାର ଚେଷ୍ଟାରେ
ତା' ରଙ୍ଗସଭା ମଝିରେ ଆସି ଯାଇଛି ପହଞ୍ଚି ;
ଏ ଏକ ଏପରି ସ୍ୱପ୍ନର ମେଘ
ଯାହାକୁ ସ୍ୱପ୍ନରେ ଖାଲି ଅପେକ୍ଷା କରାଯାଇପାରେ
ଯାହାକୁ ଛୁଇଁଲେ ଛୁଇଁବାର ଜାଗାଖାଲି
ଓଦାଘାସ ପରି ଲାଗେ ଅଥଚ ଟୋପାଏ ପାଣିର
କଅଁଳ ଦାଗ ରହେ ନାହିଁ ଆଙ୍ଗୁଠି ରେଖାରେ ।

ଚାହିଁଲା ମାତ୍ରକେ କଂସ
ଚାରି ଆଖି ଏକତ୍ର ହୋଇଲା
ସତେକି କେଉଁ ପ୍ରାଚୀନ ତୃଷାର୍ତ୍ତ ମରୁଭୂମି
ନିମିଷକେ ଶୋଷିନେଲା ପ୍ରଳୟ ପ୍ଲାବନ
ବରଂ କୁହାଯାଇପାରେ
ଏତେ ବଡ଼ ସମୁଦ୍ର ବି ଲିଭିଗଲା
ଚୋରାବାଲି କୂଳରେ କୂଳରେ ।

କ'ଣ ଦେଖିଲା କଂସ
ଏତେ ଲୋକ ଗହଳିରେ
ନିସ୍ତବ୍ଧ ରଙ୍ଗସଭା ଘରେ,
ଆଖିରେ ଆଖିରେ ମୃତ୍ୟୁ
ଜନ୍ମଲାଭ କଲା ଓ ଆଖିରୁ ଆଖିକୁ
ଡେଇଁ ପ୍ରାଣନାଶ କଲା । ନିଷ୍ଫଳ ମଞ୍ଚରୁ
ପଡ଼ିଲା ଖସି ସତେ ବା ପାମ୍ପରା ଡାଳ ଗୋଟେ
ଖସିଲା ଗଛରୁ । ତେଣୁ ମୋ'ର ସର୍ବଦା ସଂଶୟ
ଯେତେ କାଇଦାରେ ସଜାଉଛ ମୋ'ର ରଙ୍ଗସଭା ।
ଯେତେ ଦୃଢ଼ କଲେ ପଛେ ମଞ୍ଚର ଆସନ

ଯେତେ ବୀର ଦ୍ୱାରରକ୍ଷୀ ମୁତୟନ କରିଲେ ସେଠାରେ
କ'ଣ ହେବ, କେଉଁବାଟେ ରୋକିବ ତାହାକୁ ?

ବର୍ଣ୍ଣନାରେ ଧରାଛୁଆଁ ଦିଏ ନାହିଁ
ସେ ମେଘର ଆଦବ କାଇଦା ଓ ଏଇକ୍ଷଣି
ଏଡ଼େ ଟିକେ ତ, ଏଇକ୍ଷଣି ବ୍ୟାପିଯାଏ ତମାମ୍ ଆକାଶ ।

# ଆସ ବା ନ ଆସ

ସୌରୀନ୍ଦ୍ର ବାରିକ

ଆସ ବା ନ ଆସ
ମୁଁ କିନ୍ତୁ ତୁମକୁ ଅନେଇ ବସିଥିବି
ମରୁଭୂମି ଯେମିତି ଯୁଗଯୁଗ ଧରି
ମେଘ ପାଇଁ ଅନେଇ ରହେ
ଠିକ୍ ସେଇମିତି ।

ତୁମ ପାଇଁ ଅନେଇ ବସିଲେ
ପ୍ରତିଟି ମୁହୂର୍ତ୍ତ ଗର୍ଭିଣୀ ହୋଇଉଠେ
ଅନିଶ୍ଚିତ ନିଶ୍ଚିତତାରେ ।
ପ୍ରତି ମୁହୂର୍ତ୍ତରେ ଲାଗେ ଯେମିତି
ପର୍ଦ୍ଦା ଟେକି ତୁମେ ଘର ଭିତରକୁ ପଶି ଆସିବ
ଟେନାଏ ଖରା ପରି, ସୁଲୁସୁଲିଆ ବାଆ ପରି,
ଅବା ଚିହ୍ନା ଚଢ଼େଇର ରାବ ପରି ।
ତୁମେ କିନ୍ତୁ ଆସନି
ସରେନି ବି ଅପେକ୍ଷାର ରୋମାଞ୍ଚିତ ବିରକ୍ତି ।

ସତରେ ତୁମେ ଯଦି ଦିନେ ଚାଲି ଆସ ?
ମୁଁ କ'ଣ କରିବି ?
ବସିବାକୁ ଚୌକିଟିଏ ଦେଇ ପାରିବି ତ :
କୁଶଳ ବାରତା ଟିକେ ପଚାରି ପାରିବି ତ : କେଜାଣି !

ତୁମେ ସେଇମିତି ଖାଲି ମୁରୁକି ହସୁଥିବ
ଆଉ ମୁଁ ଧୀରେ ଧୀରେ ଜଡ଼ ପାଲଟି ଯାଉଥିବି
କାହିଁକି ନା ମୋ' ଅନେଇ ବସିବା ଯେ ଭାଙ୍ଗିଗଲା
ପ୍ରତିଟି ରକ୍ତକଣିକା ମୟୂର ପରି ଏବେ ନାଚି ଉଠିବେ
ଗାଇ ଉଠିବେ କୋଇଲି ପରି । ପଥର ନ ପାଲଟି
ମୁଁ ଆଉ କ'ଣ କରିବି ଯେ ?

ସତରେ କ'ଣ ତୁମେ ଦିନେ ଆସିବ ?
ଭାଙ୍ଗିଦେବ ତୁମ ପାଇଁ ମୋର ଅନେଇ ରହିବା ?
ସେତିକି ଗଲେ ମୋର ଆଉ କ'ଣ ରହିବ ଭଲା ?
ଆସ ବା ନ ଆସ
ମୁଁ କିନ୍ତୁ ତୁମକୁ ଅନେଇ ବସିଥିବି ।

# ଖାଇ

ବ୍ରହ୍ମାନନ୍ଦ ଦାସ

ଯେଉଁଠି ନଈନାହିଁ
ସେଇଠି ଖାଇ।
କଳା ଘୂମର ପାଣି
ନାଲି କଇଁର ହସ
କୂଳରେ ବଗଙ୍କ ପ୍ରତୀକ୍ଷା
ଗହଳିଆ ଜାମୁକୋଳି ଗଛରୁ
ଝରି ପଡୁଥିବା କୋଳିର ଟପ୍‌ଟାପ୍
ଗାଧୋଇ ଆସିଥିବା
ଭୂଆସୁଣୀଙ୍କ ପହଳି
ପାଣିରେ ହଜି ଯାଇଥିବା ମଥାକଣ୍ଟାକୁ
ଖୋଜୁଥିବା ଝିଅ, ଭରା କଳସୀ
କାଖକୁ ଟେକି ଆଣୁଥିବା
ନୂଆବୋହୂ
ପିଲାଙ୍କ ପାଣି ଫଳ ତୋଳା,
ଆଉ ଘାଟରେ
ଧୂଳି ଧୂସର ମଣିଷଙ୍କ ଗୋଡ଼ହାତ ଧୂଆ
ଏସବୁ ମିଶେଇ
ଖାଇ

ଖାଇ ଚାରିକଡ଼େ ମାଳ ମାଳ
ମଣିଷ ବସତି
ବଇଁଶୀ, ଲଙ୍ଗଳ, ଖଣତି
କେହି ଗବେଷକ ଲେଖେନି
ସାଧାରଣ ମଣିଷର ଇତିହାସ
ଲେଖେନି ଖାଇର
ଖୋଜେ ରାଜା ରାଜୁଡ଼ାଙ୍କୁ
ମନ୍ଦିର ଓ ମୋହରକୁ।
ଖାଇ ସବୁ ପୋତି ହୋଇଯାଏ
ଜୀବନ ସବୁ
ପୋତି ହୋଇଯାଏ।

# ଶରତ

ଧ୍ରୁବ ଖୁଣ୍ଟିଆ

ଦିନେ ଏ ଶରତ ଥିଲା ମୋର ପ୍ରିୟ ଅତି ଆପଣାର
ତା'ର ପ୍ରତି ହାସ୍ୟଛଟା ଏ ଜୀବନ କଅଁଳ ପତ୍ରର
ଥିଲା ମଧୁ ଇସ୍ତାହାର। ଏ ଶରତ ନମ୍ର ନିବେଦନ
କେତେ ଦେଉଥିଲା ଗୁପ୍ତେ ମୋତେ
ଆତ୍ମରତିର ସ୍ଲୋଗାନ।

ହାୟ, ଆଜି ମୋ ଜୀବନ୍ତୁ
ପ୍ରବଣତା କୌଂଚ ମିଥୁନଙ୍କୁ
କିଏ ବା ସେ ହତ୍ୟାକଲା ? ଏବଂ କିଏ ଦରଦୀ ବାଲ୍ମୀକି
ଲେଖିଗଲା ମୋ ଜୀବନେ ସେ ଆଦ୍ୟ କବିତା :
ମୋର ସବୁ ମନେ ଅଛି
କିନ୍ତୁ ସେଇ ସ୍ୱରର ସୌଷ୍ଠବ
ହଜିଯାଏ ଆଜିବି ଏ ପୂଜା ନହବତେ
କାରୁଣ୍ୟରେ ଥମ ଥମ ଅଂସଲଗ୍ନ ସ୍ୱରେ।

ସତେ ଭାରି ଦୁଃଖଲାଗେ ଏବେ ହଜି ନାହିଁ
ଯୌବନ ସଂଗୀତ ମୋ'ର ଏ ଜୀବନୁ
ଅନନ୍ତ ସମୟେ;
ଅଥଚ ମୋ ହୃଦସିଂଧୁ ଆଜି ନିସ୍ତରଂଗ
ଛଂଦନାହିଁ, ଧ୍ୱନି ନାହିଁ, ନାହିଁ କିଛି ନାହିଁ
ଅଛି ଖାଲି ମଧ୍ୟାହ୍ନ କପୋତୀର ଅସରା କାରୁଣ୍ୟ
ଏ ସଂସାରେ ବଞ୍ଚିବାକୁ
କ୍ଳାନ୍ତିକର ନୀରସ ଭାଷଣ ॥

# କୈବର୍ତ୍ତ

ସୌଭାଗ୍ୟ କୁମାର ମିଶ୍ର

ନା ସୂର୍ଯ୍ୟ ନା ମୁଁ- ତମକୁ ଲକ୍ଷ୍ୟ କରୁଥିବା ଲୋକ-
କାହାଠୁ କିଛି ପାଇଚୁ ଦିନସାରା ?
ସୂର୍ଯ୍ୟ ଏବେ ବୁଡ଼ିବାକୁ ଯାଉଚି,
ମୁଁ ଆସି ଏକୁଟିଆ ବସିଚି ନଈକୂଳେ।
ଆମେ ପରାସ୍ତ ନା ? ତମ କଥା କ'ଣ ?
କେତେ ମାଛ ଧରିଲଣି ? ନା ଖାଲୋଇ ଖାଲି ?

ତମ ଡଙ୍ଗା ଭାସୁଚି ଗଣ୍ଡ ପାଣିରେ, ଅଟକୁଚି,
ପୁଣି ଭାସି ଯାଉଚି। ତମ ମନର ଜ୍ୟାମିତିକି
ମୁଁ ଧରି ପାରିନିକି ନାହିଁ, ଛପ୍‌ଛପ୍
ଫିଙ୍ଗି ଦେଉଚ ଜାଲ। ସାବାସ୍
ସାବାସ୍ ତମ କହୁଣୀର ପାରିଲାପଣକୁ।

ଠେଲି ପେଲି ସିନା ପଶିଗଲି ସେ ଗହଳିରେ,
ଦେଖିବାର ନ ଥିଲା କିଛି ହେଲେ। ମ୍ୟାଜିକ୍‌ବାଲାର
ଖେଳ ସରିଲାଣି। ପେଡ଼ିପୁଟୁଳା ବାନ୍ଧିବୁନ୍ଧି,
ଝାଡ଼ିଝୁଡ଼ି ହୋଇ ସେ ଠିଆ ହେଲାଣି ଯିବାକୁ।
ଏୟା ହିଁ ଏଯାଏଁ ମୁଁ କହି ଆସିଚି –
ଯାହା କିଛି ମିଳିଗଲା ଭାବିଚି ସେ ସବୁ
ନା ଉଜ୍ଜ୍ୱଳ ନା ସଚଳ ତୁମ କଳ୍ପିତ ଅକଳ୍ପିତ ମାଛ ପରି।

ତମେ ବୋଧହୁଏ ଜାଣି ପାରୁଚ ମୁଁ କ'ଣ ଭାବୁଚି
ତମକୁ ଚାହିଁ ଚାହିଁ। ସେ ଜାଣିବା ଯଥେଷ୍ଟ ନୁହେଁ ମୋଟେ।
ଅନ୍ତତଃ ଆମେ ଫେରିବା ଯାଏ, ମୁଁ ଘରକୁ,
ତମେ ବଜାରକୁ, ତା'ପରେ ମଦଭାଟିକୁ, ସୂର୍ଯ୍ୟ ଅସ୍ତାଚଳକୁ।
ଦୁର୍ମୂଲ୍ୟ ଧରାପଡ଼ିଲେ କେମିତି ଲାଗେ ଜାଣିବା, ଛଟପଟ ହେବା।

ଆମେ ପରସ୍ପରକୁ ଧରି ନେଇଚେ ଯିଏ ଯା'ର ଜାଲରେ।
ଆମର ମୃତ୍ୟୁ ସେଥିପାଇଁ ନାହିଁ।
ଦେଉଳର ଆଳତି ଘଣ୍ଟା ଶୁଭୁ ନ ଶୁଭୁ

କାଲି ପୁଣି ଏଠିକି ଆସିବା, କଥାବାର୍ତ୍ତା କରିବା,
ହାରିଲେ ହାରିବା ।
ଅସୁନ୍ଦର ହେବ
ଅଧିକା କିଛି ମାଗିଲେ ମାଟି ପାଣି ଆକାଶ ପବନକୁ ।

# ହାଟବାହୁଡ଼ା

ନିତ୍ୟାନନ୍ଦ ନାୟକ

[୧]

ପକ୍ଷୀଟିଏ ବି ବସେନି ଆଜିକାଲି।
ଡେଣାର କମ୍ପନ ଶୁଭେ ସ୍ୱ ସ୍ୱ ଆତ୍ମୀୟ ଶତ୍ରୁଙ୍କ
କୋଳାହଳ ପରି। ଶବ୍ଦହୀନ ଧୂସର ଆକାଶକୁ
ଚାହିଁ ରହିଥାଏ ଶୁଖିଲା ଶାଖାର ଶିରାସବୁ।
ମହାର୍ଘ ଦୁଃଖ ସଞ୍ଚିତ ହୋଇଥାଏ କୋଥଳିରେ।
ପ୍ରକାଣ୍ଡ ଅବିଶ୍ୱାସ ନହଡ଼ି ଭାଙ୍ଗୁଥାଏ ନିଃଶ୍ୱାସରେ।

ଏଥର ଚାଲ। ପୁଅ ବୋହୂ ଉଡ଼ିଗଲେଣି
କୋରାପୁଟ କି ସମ୍ୱଲପୁର। ନିଷ୍ଠୁର ମୂଢ଼ତାର
କପଟପାଶାରେ ପରାଜୟ ତ ସାର। ଏପରି ହୀନସ୍ତା ଠାରୁ
ଅଜ୍ଞାତ ବାସ ବରଂ ଭଲ,
ହେଉପଛେ ଗାଁ ବା ସହର।
ଯେଉଁଆଡ଼େ ଗଲେ ଦିଗ୍‌ବିଜୟ
କଣ୍ଢେଇ ଖେଳର।

ବୁଢ଼ାର ମୂହଁରେ ମେଘ
ପୁଣି କେବେ ସୂର୍ଯ୍ୟାସ୍ତର ଖରା,
ଭଙ୍ଗାରୁଜା ବଖରାର ଛାଇ ଛାଇ ସାଦାପଲସ୍ତରା।
କ'ଣ ବିଶ୍ୱାସ ତାକୁ? ନୂଆ ଘାସ ଖାଉଥିବା
କଅଁଳା ବାଛୁରୀ ପରି ଚାହୁଁଥାଏ ସମସ୍ତଙ୍କୁ
ଉପରକୁ ମୁହଁଟେକି। ଜାଲୁ ଜାଲୁ ଆଖିରେ ତାହାର
କ'ଣ ଖୋଜୁଥାଏ? ପିଞ୍ଜରା ଭିତରେ ପକ୍ଷୀ କ'ଣ ଖାଏ?
ପିଞ୍ଜରା ଭାଙ୍ଗି କୁଆଡ଼େ ଚାଲିଯାଏ? ଗଛର
ସବୁଠାରୁ ସତେଜ ଓ ସାବ୍‌ଜା ପତ୍ରଟି ବିନା ପବନରେ
କେମିତି ଖସିପଡ଼େ? ଏସବୁ ପ୍ରଶ୍ନ ପଚାରି
ବିରକ୍ତ କର ନାହିଁ। ଦେଖୁନ
ଝଡ଼ ବର୍ଷାରେ ନାଉରୀଆହୀନ ଡଙ୍ଗାପରି
ଦୂରକୁ ଭାସିଯାଏ ସେ।

[୨]

ବୁଢ଼ାର ରସିକତା କହିଲେ ନସରେ
ପାକୁଆ ପାଟିରେ ହସ, ଆଶାବାଡ଼ି ତେଲ ଢରଢର
ଲୋଟାକୋଟା ଚିକ୍‌କଣ ଚମକୁ ସାଇତି ରଖିଚି
ଧୋବଲୁଗା । ଆଉ କାହାକୁ ଖାତିର ତା'ର
ଫେରିବାଲାର ଡାକ ନା ବାଘର ହେଣ୍ଟାଳ ?
ବୁଢ଼ା ବସିଚି ଉଚ୍ଚ ପିଣ୍ଡାରେ । ଟଙ୍ଗା ହୋଇଥିବା
କଟା ଛେଳି ପରି ଝୁଲାଇ ତା' ଫୁଲାପାଦ ।
ମଲା ଲୋକର ଖପୁରି ପରି ଖଣ୍ଡେ ଶେତା ଆକାଶ
ତଳେ ଲମ୍ୱି ଯାଇଚି ଗହୀର କ୍ଷେତ, କିଆବାଡ଼
ଆମ୍ୱ ବୁରେଇ ଓ ଗ୍ରାମଦେବତୀଙ୍କ ନିମଗଛ ।
କ୍ରମାନ୍ୱୟେ ସବୁ ଫେରିଆସେ ଆଖିର ସୀମାକୁ
ସବୁ ମନେ ପଡ଼େ, ସ୍ତ୍ରୀ ଲୋକଙ୍କ ନିଃଶ୍ୱାସ ଓ ବିଷୟ-ତୃଷ୍ଣାରେ
କ୍ଷୟପ୍ରାପ୍ତ ଆୟୁଷ ଓ ବାଲ୍ୟକାଳୁ ଧର୍ମ-ଧନ ସଞ୍ଚିବାର
ମୁଖସ୍ଥ ପ୍ରତିଜ୍ଞା । କ୍ରମାନ୍ୱୟେ ସମସ୍ତ ଅଦୃଶ୍ୟ ହୁଏ
ଓ ଶେଷରେ ତମର ଲୁହଭର୍ତ୍ତି ଉଜ୍ଜ୍ୱଳ ଆଖିର କଥା
ଶୁଣିବା ଆଗରୁ ବୋଇତ ଲାଗଇ କେଉଁ
ଅଚିହ୍ନା ଉପକୂଳରେ ।
ଭୟଙ୍କର ଦିଶୁଥିବା
ବିଧବା ସ୍ତ୍ରୀ ଲୋକଟିଏ
ହାତଧରି ନିଏ ଓ ଟହଟହ ହସି
ହଠାତ୍ ଉଭାନ୍ ହୁଏ ନିକଟସ୍ଥ ଘଞ୍ଚ ଜଙ୍ଗଲରେ ।

# କାଠଘୋଡ଼ା

**ଜୟକୃଷ୍ଣ ବାରିକ**

ହଠାତ୍ ମୋ ପାଦ ଦି'ଟା ମକଚିଗଲା । ଗଛଙ୍କର ପତ୍ରେ ପତ୍ରେ
ଚକ୍ ଚକ୍ ଦେଖାଗଲା ଭାବୀକାଳ, ବହୁ କିଛି କାଳିମାର
ଉତ୍ତୀର୍ଣ୍ଣତା ଓ ଅଜ୍ଞାତ କୌଣସି ଏକ ପୃଥିବୀର ପ୍ରଥମ ସୋପାନ ।
ପୋଖରୀ ମଝିରେ ଥାଇ ଉବୁଟୁବୁ ହେବା ନିଶା ଛାଡ଼ିଦେଇ
ହୁଡ଼ା ପାଖେ ବସିଥିବା ହଂସଟାକୁ ଛୁଇଁବା ଆଶାରେ ନିଜ ସହ
ପରାମର୍ଶ କଲି । ଏବଂ ସୂର୍ଯ୍ୟ ମୁହାଁ ହୋଇ ମନର ଯେତେକ
ଦର୍ଜା ଖୋଲା କଲି ହାତେ ଧରି ଫୁଲ ଆଉ ଚନ୍ଦନର ଥାଳୀ ।
ତମେ ଖାଲି ଭାବୁଥିଲ, ଏ ଲୋକଟା ଅଲାଜୁକ, ପୃଥିବୀର
କୋଳାହଳ, ଧ୍ୱନି ଏବଂ ନାଚଛାଡ଼ି ନିଜ ଦେହ ପାଲିସ୍ କରୁଛି ।

ଆଜି କିନ୍ତୁ ଅବାନ୍ତର ଲାଗେ । ଅନନ୍ତ ଶୟନ ଆଶା ପତ୍ରପରି
ଉଡ଼ିଯାଏ ନିକଟରୁ ଅନେକ ଦୂରକୁ । ମକ୍ଚା ପାଦ ଆଉ ଥରେ
ମକ୍ଚି ହୋଇଯାଏ । ମୁଁ ନିଜକୁ କେତେ ଇଚ୍ଛା କରେ । ଆଖି ଆଗେ
ଅନ୍ଧାରର ଅପନ୍ତରା ଦେଖିସାରି ଅର୍ଥବାନ୍ କରେ ସବୁ
ବିଫଳ ମୁହୂର୍ତ୍ତ, ସେଗୁଡ଼ିକ ଇତିହାସ: ନିଜଟାର ଶେଷ ପରେ
ଇତିହାସ କାହିଁ? ମୋର ଏଠି କେତେ ତୀର୍ଥ, ଯାତ୍ରା ନାଇଁ କେବେ:
ପଥ ନାଇଁ ତେବେ ମଧ ଚାଲିବାକୁ ହୁଏ । ବୈଶାଖର ପ୍ରଚଣ୍ଡ
ରୌଦ୍ରରେ ବିକଳାଙ୍ଗ କୁକୁରଟା ଦୌଡ଼ି ବୁଲେ ଏଣେ ତେଣେ
କାହା ପିଛା ଧରି ? ସୁତରାଂ ମୁଁ ମୁଖସ୍ଥ କରିନିଏ
ଜରା ବ୍ୟାଧି ମୃତ୍ୟୁର ସମ୍ବାଦ ଛୋଟଘରେ ଲଣ୍ଠନ ଜଳାଇ ।

କାଠଘୋଡ଼ା ମନ୍ଦ ନୁହେଁ, ତା' ଛାତିରେ ଭୟ ନାଇଁ, ମସ୍ତିଷ୍କରେ
ବିଭ୍ରମ ବି ନାଇଁ । ସେ ଅନେକ ସ୍ୱପ୍ନ ଦେଖେ, ପାଣିପିଏ
ବାଟ ଚାଲେ, ଦୌଡ଼େ ପୁଣି ଅରମା ମୈଦାନେ — ।
ମୋର ଯେଣୁ ସରିନାଇଁ ଜରା ବ୍ୟାଧି ମୃତ୍ୟୁ ଆଉ
　　　ଶୋକର ସମୀକ୍ଷା
ମୋର ଯେଣୁ ସରି ନାଇଁ କାମନା ଓ ପ୍ରତୀକ୍ଷା ଓ ପ୍ରତୀକ୍ଷାର
　　　ନଗ୍ନ ଆତୁରତା
ମୋର ଯେଣୁ ସରି ନାଇଁ କ୍ଲାନ୍ତି, ଗ୍ଲାନି, ଅଶାନ୍ତି, ଶୂନ୍ୟତା ଆଉ
　　　ଜ୍ୱଳନର ତୀବ୍ର ଆକୁଳତା

କାଠଘୋଡ଼ା ବେଶ୍ ଭଲ ଲାଗେ । ମକ୍‌ଚା ପାଦ ହେତୁ
ଚାଲିବାର ସନ୍ଦେହ ଭିତରେ ଖୋଜି ବସେ ନିଜର ଅସ୍ତିତ୍ୱ
ଓ ବସିପଡ଼େ କାଠଘୋଡ଼ା ପିଠିଟା ଉପରେ, ଅବଶେଷେ
ପାପର ପ୍ରଦୀପ ନେଇ ଜଳାଇ ରଖେ ମୁଁ ଧୀରେ ଦୁଷ୍କୃତିର କାଳ-ପୁରୁଷକୁ ।

# କିମ୍ବଦନ୍ତୀ

ବଂଶୀଧର ଷଡ଼ଙ୍ଗୀ

ଗଳିମୁଣ୍ଡରେ
ମାଟିରେ ମିଶୁଥାଏ କାଠଚମ୍ପା ଫୁଲ
ଭଙ୍ଗା କାନ୍ଥରେ
ନେଶି ହେଉଥାଏ କିମ୍ବଦନ୍ତୀ
ସତକଥା କହିଦେବାରେ
ସହସା ଜିଭ ଲେଉଟେନି କାହାର
ଏ ଅକ୍ଷମତା ପରୀକ୍ଷିତର
ନା ପରାଶରର ?

ଗୋଟିଏ ଦିନ ଥରକ ପାଇଁ ହେଲେ
ଅଟକି ଯାଏନି ଆଉ ଗୋଟିଏ ଦିନ ପାଇଁ
ସମୟର ଭଙ୍ଗାପାଦ ବଢ଼ାଉଥାଏ ଆଗକୁ ।
ଆମୂଳ କବି
ଆସକ୍ତ କବିତାରେ
ଶବ୍ଦର କୁଟିଳ ବନ୍ଧନୀରେ
କାରଣ ନ ଥାଇ ଘଟୁଥିବା କାର୍ଯ୍ୟ ପଛରେ ।

କିଏ ତାକୁ ମୁକ୍ତି ଦେବ
କେନ୍ଦ୍ରରୁ ପରିବ୍ୟାପ୍ତ କରିବ ପରିଧିକୁ
ଅନୁମାନରୁ ଓହରେଇ ଆଣି
ଦେଖେଇ ଦେବ କପଟ ପୃଥିବୀକୁ ?
କବିର ପରାକାଷ୍ଠା
ମୂଳ କଥାକୁ ଲୁଚେଇ ଦେବାରେ ।
ସେ ତା'ର ସବୁ ଅପାରଗତାକୁ ଯେମିତି
ଲୁଚେଇବା ଚେଷ୍ଟାରେ ଲାଗିଥାଏ ।

ଟିକିଏ ଅପେକ୍ଷା କର
କବିତାଟିଏ ଦାନା ଧରିବା ପର୍ଯ୍ୟନ୍ତ

କ୍ଷମା କରିଦିଅ ମେଘମାନଙ୍କୁ,
ମୟୂର ଦମ୍ପତିଙ୍କୁ,
ନିଆଁରେ ଝାସ ଦେଉଥିବା ପତଙ୍ଗମାନଙ୍କୁ ।

ଫାଟକ ଖୋଲିଦେଲେ
ଘୁଞ୍ଚିଯିବ ସମସ୍ତ ଦୂରତ୍ୱ
ହେଲେ, କିଏ ଫାଟକ ଖୋଲିବ ?
କିଏ ବଦଳେଇ ଦେବ ପୂର୍ବ ସିଦ୍ଧାନ୍ତକୁ ?
ମାଟିତଳୁ କିଏ ଉଦ୍ଧାର କରିବ
ଭଗ୍ନ ଦୁର୍ଗକୁ ?

# କେଲୁଣୀ

ହରିହର ମିଶ୍ର

ସେ ନଚେତ୍ ତା'ର ସମବୟସୀ ଯେ
ଚାଲିଗଲେ ଏକା ଦେଖି ଥଟ୍ଟା କରି ମତେ
ମରଣ ଯା' ହେଲାନାହିଁ ଛୁଆ ପିଲା ବାପ ଅଜା
ଥିବାସତ୍ତ୍ୱେ, ଏତେ ଦାୟିତ୍ୱ ବିହୀନ ମନ
ଖୋଜଇ ଯୁଗଳ ମୂର୍ତ୍ତି ମତ୍ତ ବୃନ୍ଦାବନ।
ରିକ୍ସାରେ ବେଶକରି ଆଣିବି ମୋ କେଲୁଣୀକି
ନାକରେ ନୋଳକ ଦେବି ଜୁଡ଼ାରେ ତା' ଖୋଷି ଦେବି ପର
ତାଉରେ ଲେଖିବି ତା'ର ସ୍ତନକୁମ୍ଭ....
ତା' ଦୃଷ୍ଟିର ଶୁଭ ଶଙ୍ଖଚିଲ,
ଆଣିଦେବ ହଜିଥିବା ସହରର ଯାନିଯାତ୍ରା ପର୍ବ ରଙ୍ଗଖେଳ।

ବହୁଦିନୁ ସହରର ସ୍ୱରଯନ୍ତ୍ର ଧୂଳି ଓ ଥଣ୍ଡାରେ
ବସି ଯାଇଅଛି କାଁ ଭାଁ ମୂଷା ଓ ଚୁଚନ୍ଦ୍ରାଙ୍କ
ଦୌଡ଼ା ଧାପଡ଼ାରେ ଟୁନ୍‌ଟାନ୍ ସଙ୍ଗୀତ ବ୍ୟତୀତ
ଗୀତ ନାହିଁ ଛନ୍ଦ ନାହିଁ କେଲୁଣୀ ଓ ମୋର ନୃତ୍ୟ ପାଇଁ।

ସମୁଦ୍ରର ଧାରେ...ଧାରେ ଯାଆଲୋ କେଲୁଣୀ ମୋର
ମାଈ ସଂଜ, କାଲି ଅନ୍ଧାରରେ ଲମ୍ବ ଲମ୍ବ ଦୁଇଧାରା ଲୁହଭଳି
ଢଳ ଢଳ ଯୁଗଳ ମୂର୍ତ୍ତିର ଛାଇ ଝୁଲୁଛନ୍ତି..
କି ପ୍ରକାଣ୍ଡ ନୀରବତା ବ୍ୟାପିଯାଏ ଦୁହିଁଙ୍କ ଭିତରେ......
ଯୁଗଳ ମୂର୍ତ୍ତି ସବୁ ଯୌବନର ଶବାଗାରେ ରୁଦ୍ଧ ମୁହୂର୍ତ୍ତରେ
ପୁରୁଣା ଲାଶ୍‌ମାନେ ବିସର୍ଜନ ନେଉଛନ୍ତି ପ୍ରବଳ ଘଣ୍ଟ
ଘଣ୍ଟା ଖୋଳ କରତାଳ ଆଉ ଖଜଣି ମାଡ଼ରେ।

ଆମର ଯୁଗଳ ମୂର୍ତ୍ତି ହଠାତ୍ ଫେରି ଦେଖୁଛନ୍ତି
ପିଲାଛୁଆ ଶାଶୁବୋହୂ ଅଣ୍ଟାକୁ ଅଣ୍ଟା ଧରି ଚାଲୁଛନ୍ତି
ସେଠାରୁ ଅଲଗା ହୋଇ ସେମାନେ ନାଚି ଜାଣନ୍ତିନି

ସ୍ପନ୍ଦିତ ସମୁଦ୍ର ଭୂମି... ଝରଣାର ନିର୍ଜନ ଛନ୍ଦର ଯତିପାତ
ଆଜି ଆଉ ମିଶୁନାହିଁ ପରସ୍ପର ଆତଙ୍କରେ ଭିନ୍ନ ହୋଇ
ମୁହଁ ମୋଡ଼ି ଚାଲିଯା'ନ୍ତି ଯେମିତିକା ପ୍ରତିଷ୍ଠିତ ତାଳଲୟ ନାହିଁ।
କେଲୁଣୀ : ତତେ ମୁଁ ଖୋଜୁଛି କେଇ ଦି ସୋରା ପାଉଛି ତୋ ପାଇଁ।

# ଶିଶୁର ନିର୍ମଳ ହାସ୍ୟ

ପ୍ରସନ୍ନ କୁମାର ମିଶ୍ର

ବାବୁରେ ! ମୁଁ ପଚାରୁ ନାହିଁ
ତୁ କେଉଁଠି ଥିଲୁ ଓ
କାହିଁକି ଆସିଲୁ କୋଳକୁ ।
ତୁ ଆସିବାରୁ ସବୁ ସୁନ୍ଦର ହୋଇଗଲାଣି ।
ତୋର ହସ ହସ ମୁହଁ ଦେଖି
ମୁଁ ଭୁଲିଗଲିଣି ଭୋକ ।
କିନ୍ତୁ'ରେ ବାବୁ ;
ତୋର ସୁନ୍ଦର ଓଠ, ସ୍ୱଚ୍ଛ ଆଖି
ଓ ଖୋଲା କାନ୍ଦଣା ଦେଖି
ମୁଁ ଆଜି ଆତଙ୍କିତ ।
ମୁଁ ତୋତେ କ'ଣ ଖୋଇବି ?
ତୁ କେମିତି ବଞ୍ଚିବୁ ?
ଆଜି ସବୁକିଛିରେ ମୃତ୍ୟୁ ମିଶିଚି
ପାଣିରେ ମୃତ୍ୟୁ, ପବନରେ ମୃତ୍ୟୁ,
ମହୁରେ ମୃତ୍ୟୁ, ମାଟିରେ ମୃତ୍ୟୁ ।
କେମିତି ବଢ଼ିବ ତୋର ହାତ !
କେମିତି ବଢ଼ିବ ତୋର ପାଦ !
ଜାଣୁ ଜାଣୁ ମୁଁ ତୋତେ କେମିତି ମୃତ୍ୟୁ ପେଇବିରେ ?

ଚକୋଲେଟ୍ ବଦଳରେ
ଆଜି ଜରିକାଗଜରେ ଗୁଡ଼ା ହୋଇଚି ବୋମା,
ଆପେଲ୍‌ରେ ଖଞ୍ଜା ହୋଇଛି ଅଗ୍ନି,
ଦୁଗ୍ଧରେ ତରଳ ମାରଣାସ୍ତ୍ର
କେଉଁଠି ଆଉ ମୃତ୍ୟୁ ନାହିଁ ଯେ ?

ତଥାପି ତୁ ହସୁଥାରେ ବାବୁ ;
ଏଇ ଘଡ଼ିକ ମୋ ଘର ପୂରିଥାଉ
ତୋ ହସରେ ।

ତୋର ବନାନ୍ହୀନ ହସ ଶୁଣି
ଖଣ୍ଡା ପକେଇ ଦେଇ
ସୁନ୍ଦର ହୋଇଯାଇପାରେ ମୃତ୍ୟୁ ।

# ଆକାଶ

ବନଜ ଦେବୀ

ରସମୟୀ ଶ୍ୟାମଳା ଧରିତ୍ରୀ ନୁହେଁ
ମୁଁ ଏକ ଧୂସର, ଉଷର ମୃତ୍ତିକା ଖଣ୍ଡ
ମୋର ଆହ୍ୱାନ, ଅନ୍ୱେଷଣ
ତମେ ।
ଏକ ସୁଦୂର ନୀଳ ଆକାଶ
କେତେ ସୁନ୍ଦର କେତେ ବିଶାଳ, କେତେ ଉଜ୍ଜ୍ୱଳ
ଅବ୍ୟକ୍ତ ଲୀଳାରେ ତମେ ଲୀଳାମୟ
ଅଜ୍ଞାତ ସ୍ୱରର ନିର୍ଯ୍ୟାସେ - ତମେ ସୁରାଚ୍ଛନ୍ନ
ତେବେ ବି ତ ତମେ ମିଥ୍ୟା, ଅଳୀକତା
ତମେ ଶୂନ୍ୟ । ମହାଶୂନ୍ୟ ।

ତଥାପି ତୁମକୁ ମୁଁ ଭଲପାଏ
ତମ ନୀଳିମାରେ ମିଶିଯାଇ
ଛଳ ଛଳ ହୁଏ
ତମେ ବର୍ଷା ହୋଇ ମତେ ଆର୍ଦ୍ର କରିଯାଅ
ପ୍ରଭାତର ଖରା ଦେଇ
ମୋର ଦୃଷ୍ଟି, ଉନ୍ମୀଳିତ କର
ଗୋଧୂଳି ସୀମାନ୍ତେ ମୋର ମୌନ ସ୍ୱପ୍ନକୁ କରାଅ ଆରକ୍ତ
ରାତିର ନୀରବତାରେ
ମୋର ପାଖେ ପାଖେ, ଧରାଦିଅ
ତମେ କେମିତି ତେବେ ଶୂନ୍ୟ ?
କେମିତି ଅସ୍ପର୍ଶ ? ଆଉ କେମିତି ବି ମିଥ୍ୟା ?

ପ୍ରାଣର ଏହି ଅସରନ୍ତି ଆକୁଳତା
ଅନନ୍ତ ବୁଭୁକ୍ଷାର ଅନ୍ୟନାମ
ମୁଁ କି ପ୍ରେମ
ତମେ ମୋର ଅପୂର୍ଣ୍ଣ ପିପାସା
ତମେ ଏକ ଜାଗ୍ରତ ଆୟତ ସ୍ୱପ୍ନ
ବଞ୍ଚି ରହିବାର, ଉଦ୍ଦାମ ପରିଭାଷା ।

# ବିଧବା

ନିତ୍ୟାନନ୍ଦ ପତି

ଖଇଫୁଟା ଖରାବେଳେ ଗଛକୁ ନିସଖା କରି
ପବନରେ ପ୍ରୀତିଖେଳି ଉଡ଼ିଯାଏ ତୁଳା,
ସରୁନଈ ଧାର ସିନା ଛୁଏଁ ନାହିଁ ଚେର ତା'ର
ଅନାସକ୍ତ ଗଛଛାଇ ସାରାଦିନ ନଈର ସାନ୍ତ୍ୱନା ।

ଡାଳରେ ତ ଶୂନ୍ୟକୋଷା ସତେ କିବା
ଅସହାୟ ମୃତ ବୃଦ୍ଧା ଆଖି,
ବସାବନ୍ଧା ଚଢ଼େଇବି ଗଛର ବକଳ କାଟେ
ସ୍ୱାର୍ଥାନ୍ୱେଷୀ ପୋଷ୍ୟପୁତ୍ର ମିଛ ହସ ପ୍ରୀତି ।
ଆଉ କେବେ ଫୁଟିବନି ଫୁଲ ଏଠି
ସତୀତ୍ୱର ସୀମା ରେଖା ଟାଣି,
ଟୁକୁରା ବୟସ ସବୁ ମଲା ଦୁବ ଭଳି ଦିଶେ
ଭାସିଗଲା ନଈସୁଏ ଓଦା ତୁଳା ଭଳି ।

ସମୟର ଚଢ଼େଇ ତ ନୂଆ ପର ଛାଡ଼ିଦିଏ,
କେବେ ପୁଣି ବାଲିଗୋଡ଼ି ଛାଟିଦିଏ
ଅସମ୍ପୂର୍ଣ୍ଣ ଭିକାରୀ ଥାଳକୁ,
ବାଧକରେ ଖୋଜିବାକୁ ରତ୍ନମୁଦି
ସାତ ତାଳ ସମୁଦ୍ରର ଅମାନିଆଁ ପାଣି ଭଉଁରୀରେ,

ଦୁଃଖ କି ପିଞ୍ଜରା ପକ୍ଷୀ,
ପଥଭୁଲା ପଥିକକୁ ଖାଁ ଖାଁ ନିର୍ଜନତା
ଛନ୍ଦାଛନ୍ଦି ବିକଳ ମୁହୂର୍ତ୍ତେ ।

ଗଛ ନାହିଁ । ଚାରିଆଡ଼େ ଗଛ ଛାଇ
ସ୍ୱରୂପରୁ ମୁକ୍ତି ପାଇଁ ସ୍ଥିତିରୁ ବିଚ୍ୟୁତି,
ସୃଷ୍ଟିର ସ୍ୱୀକୃତି ଭୁଲି ନଦୀ କରେ ପଦଯାତ୍ରା ସମୁଦ୍ରକୁ
କେବେ ଦ୍ରୁତ କେବେ ଧୀର ଗତି
ଛାଇ ଛାଇ ଅନ୍ଧାରରେ ପାହେ ନାହିଁ ରାତି ।

ନିଦ୍ରା ଭାଙ୍ଗିଗଲା ପରେ ସାରାଦିନ ଦୂରଦୃଷ୍ଟି
ସେଇ ବାଟ, ଛାଇ ଛାଇ ଆଲୋକ ଓ ଅନ୍ଧାରରେ
ବୈଶାଖ ବସନ୍ତ।
ବୟସର ଭୀରୁମନ ନିତି କିବା ଖୋଜିଚାଲେ
ବାଲିଚରେ ରାସ୍ତା ଧାରେ ଚନ୍ଦନ ସମ୍ପର୍କ।

# କଳାହାଣ୍ଡି

ସରୋଜ ରଞ୍ଜନ ମହାନ୍ତି

କଳାହାଣ୍ଡିର ଓଠରୁ କିଏ ସେ
ହସ ଲୁଟି ନେଇଛି, ତା' ମୁହଁ
ବିଷଣ୍ଣ ବିବର୍ଣ୍ଣ, ଲୁହଭରି ଆଖି,
ତା' ଦେହରେ କିଏ
ବେଢ଼ାଇଛି ସାତସିଆଁ ଶାଢ଼ୀ ?
କାହାଲାଗି ତା'ର
ଆଜି ଏଇ ନିରୀମାଖୀ ରୂପ ?
କିଏ ସେ ଲୁଣ୍ଠନକାରୀ
କଳାହାଣ୍ଡିକୁ କରିଛି ଏତେ ହତଶିରୀ ?

କଳାହାଣ୍ଡି ଆକାଶରେ ମେଘ ନାହିଁ, ସେଠି
କଳାହାଣ୍ଡିଆ ମେଘର ଛାଇଟିଏ ନାହିଁ,
ଦିନ ଦିନ ମାସ ମାସ ଧରି,
ଦିନସାରା ସୂର୍ଯ୍ୟର ଆକ୍ରୋଶ
ଓ ରାତିରେ ମେଘହୀନ ମିଛ ବଉଦଙ୍କ
ଶୂନ୍ୟ ସଞ୍ଚରଣ, ଚତୁର୍ଦ୍ଦିଗ ମରୀଚିକାମୟ।

ବର୍ଷା ବିନା ହାହାକାର, ମଣିଷ ପାଲଟିଯାଏ
ଚାତକ,
ଅନାବୃଷ୍ଟି ଦିଏ ନାହିଁ ଛାଣିବାକୁ
ମାଟିର ପ୍ରତିଭା...
ବନ୍ଧ୍ୟା ନାରୀଙ୍କର ସ୍ତନ ଭଳି, କୃପଣର ଧନ ଭଳି
ବର୍ଷା ବିନା ଫଟାଭୂଇଁ ବିଲମାଳ
ବ୍ୟର୍ଥ ଓ ନିଷ୍ଫଳ।

କଳାହାଣ୍ଡିର ଭାଗ୍ୟ ଏମିତି ଯେ ସୁବିଧାବାଦୀଙ୍କ
ହରିଲୁଟ୍ ଉତ୍ସବରେ
ପଦା ହୋଇଗଲାଣି ଜଙ୍ଗଲ, ତା'ର
ପ୍ରତିବଦଳରେ ସ୍ଫୀତ ମୁନାଫାଖୋରଙ୍କ ପକେଟ୍,
ନିଜେ କିନ୍ତୁ କଳାହାଣ୍ଡି
ପିନ୍ଧିଥାଏ କାଙ୍ଗାଳୁଣୀ ବେଶ।

ଫୁଲକୁ ଲୁଣ୍ଠନ
କଲାଭଳି ଅଳି
କଳାହାଣ୍ଡିର ଛାତିକୁ ଶୋଷି
ଶେଷ କରିଦେଇଛନ୍ତି ସେଇମାନେ,
ଲୁଟି ନେଇଛନ୍ତି ତା'ର ସମସ୍ତ ସମ୍ପଦ;
ସେମାନଙ୍କ ପାପାର୍ଜିତ ଧନ
ଭାଦ୍ରବର ନଦୀ ଭଳି ଦୁଇ କୂଳ ଲଘି
ଆଗକୁ ଆଗକୁ ମାଡ଼ି ଚାଲିଥାଏ ।

ଦିନ ଦି'ପ୍ରହରେ କଳାହାଣ୍ଡିକୁ ଲୁଣ୍ଠନ
କରୁଥିବା ଲୋକଙ୍କର ଆଦବ୍ ଏମିତି
ଇତର ଯେ
ସେ ନିର୍ଲଜ୍ଜ ଇତରତା ପାଖେ
ପରାସ୍ତ ହୋଇଯିବେ ସହଜରେ
ପ୍ରେମକୁ ବଣିଜ କରି ବିକାକିଣା କରୁଥିବା
ନାରୀ ଓ ପୁରୁଷ ।

କିନ୍ତୁ କେଉଁଠି ସେ ଋଷ୍ୟଶୃଙ୍ଗ, ଯିଏ
ମୁକ୍ତିମାର୍ଗ ଖୋଲିଦେବେ ଏବଂ
କଳାହାଣ୍ଡି ଗଳାରେ
ମେଘମାଳା ପିନ୍ଧାଇଦେଇ
ଡାକି ଆଣିବେ ଜଳଦକୁ,
ଭରିଦେବେ କଳାହାଣ୍ଡିର ଛାତିରେ
ଆଉଥରେ ଜଙ୍ଗଲର ମାୟା
ଓ ବିଲବାଡ଼ିରେ
ଫୁଟାଇବେ ସବୁଜ ସ୍ନେହର ହସ, ପିନ୍ଧାଇ
ଫୁଲଫୁଟା ରତୁର ଶାଗୁଆ ଶାଢ଼ୀ,
ଗଢ଼ିଦେବେ ସ୍ୱପ୍ନସିଦ୍ଧ ବିଶ୍ୱାସର ସମ୍ଭାବନାମୟ
ମହମହ ନୂଆ ଭବିଷ୍ୟତ ।

# ସମୁଦ୍ର ଢେଉରୁ ଆସ

ପ୍ରହରାଜ ସତ୍ୟନାରାୟଣ ନନ୍ଦ

ସମୁଦ୍ର ଢେଉରୁ ଆସ- କୁଞ୍ଚ କୁଞ୍ଚ କେଶ....
ମେଘ ଢାଙ୍କିଦିଏ ତୁମ ସାରା ଦେହ...ବିଦିଶା....ସମୁଦ୍ର
ତୁମକୁ ଫେରାଇ ଦିଏ...ବାଲିସ୍ତୂପ, ଝାଉଁବଣ ଆଡ଼େ;
ଢେଉ ଭାଙ୍ଗିଯିବା ପରେ ଘରମୁହାଁ ହେବା ପରି ମନ
ସମୁଦ୍ରକୁ ଫେରିଚାହେଁ ଆଉ କିଏ ମାଟି ଛୁଇଁଦେଲେ।

ସବୁ ଭଲ ପାଇବା ତ ମିଳେ ନାହିଁ ଗୋଟିଏ ଚେଷ୍ଟାରେ,
ତେଣୁ ତୁମେ ବାରମ୍ବାର ଆସ,
ଢେଉର ନୀଳରୁ କିଛି ଠୁଳାଅ ସାହସ
ତୁମ ଘର ଢାଙ୍କିଥିବା ପରି ଏ ଆକାଶ
ନୀଳ ନୀଳ ଭୂଲତା ମଝିରେ
ଲେଖିଦିଏ ନୀଳବିନ୍ଦୁ ଅଦୃଶ୍ୟ ସଭାର,
ଅଢାଡ଼ି ପାରିଲେ ପ୍ରେମ
ତୁମେ କ'ଣ ହୁଅ ଏକାକାର।

କେମିତି କହିବି କୁହ...
ମତ୍ସ୍ୟଗନ୍ଧା... ପ୍ରବାଳ ଦ୍ୱୀପର
ପରିତ୍ୟକ୍ତ ଟିକି ପରୀ,
ଦୂରାଗତ ବଣିକର ଲୋଭ,
ନାରୀତ୍ୱର ଅନ୍ଧ ଶ୍ରଦ୍ଧା
ଆଣେ ନାହିଁ କ୍ଷୋଭ,
ଡଙ୍ଗାକୁ ବା ନେଳିଆ କାତକୁ;
ତୁମେ ଭାସୁଥିବା ବେଳେ
ବୁଝିପାର ନିଜ ହୃଦୟକୁ।

ସମୁଦ୍ର ଚହଲେ ଯଦି ତୀକ୍ଷ୍ଣ ଶର ପବନ ମୁଠାରୁ
ପ୍ରସ୍ତ ପ୍ରସ୍ତ ପାଣି ଫିଙ୍ଗେ ଆଞ୍ଜୁଳାକୁ,
ଭୂଲତା ତଳକୁ,
କାନ୍ଧକୁ, ଛାତିକୁ: ସବୁ ପ୍ରତିରୋଧ ତୁମରି ଆତ୍ମାକୁ
ଆହୁରି ନିବିଡ଼ କରେ ଭଲ ପାଇବାକୁ।

ବିଦିଶା, ସୌନ୍ଦର୍ଯ୍ୟ ହୁଏ ସମୁଦ୍ର ଓ ତୁମେ ତା'ର ମହାର୍ଘ ଚେତନା,
ଦୋଳୁଥିବା ବେଳେ ଢେଉ କୁଦିପଡ଼େ ପୃଥକ୍ ରେଖାକୁ;
ସବୁବେଳେ ବାନ୍ଧିନିଏ ଜାଲଗୋଡ଼ି ସମ୍ପର୍କ ଖୁଅକୁ,
ଟିକି ଟିକି ଚେଷ୍ଟାରେ ଆମର ଧରାପଡ଼େ ଜୀବନର ବୋଝ ଭାର ଭାର ।

ବାହୁ ଛୁଇଁଦିଅ...ବାହୁ କରେ ଆଲିଙ୍ଗନ.....
ମାଟିକୁ, ଆତ୍ମାକୁ ତୁମ ସତ୍ତାକୁ, ନୌକାକୁ
ଢେଉ ଭାଙ୍ଗିଯିବା ପରେ ଘରମୁହାଁ ହେବାପରି ମନ,
ତୁମରି କୁଞ୍ଚିତ କେଶ ଢାଙ୍କିରଖେ ଅଥଳ ପାଣିକୁ ।

# ପୃଥିବୀର ଶେଷ ପଦାତିକଟି

ଲକ୍ଷ୍ମୀନାରାୟଣ ମହାପାତ୍ର

[୧]

ପୃଥିବୀର ଶେଷ ପଦାତିକଟି ଯାଉ ଯାଉ ଟଳିପଡ଼ିଲା
ତାହା ଥିଲା ଶେଷ ଦିନାନ୍ତ
ପଛରେ ପଡ଼ିରହିଥିଲା ସ୍ତବ୍ଧ ପୃଥିବୀ
ସରି ଯାଉଥିଲା ଦିଗନ୍ତ, ସରି ଯାଉଥିଲା ଆକାଶ,
ସମୁଦ୍ରର ତରଙ୍ଗ ସବୁ ନାଚି ନାଚି ସ୍ଥିର ହୋଇ ଯାଇଥିଲେ
ଏକ ଶିଶାର କାନ୍‌ଭାସ ପରି ସମୁଦ୍ର ଝୁଲୁଥିଲା ଆକାଶରୁ
ପଦାତିକଟି ପୁଣି ଉଠିଲା ବହୁ କଷ୍ଟରେ
ପଛକୁ ଚାହିଁଲା, ନ ଥିଲା ପୃଥିବୀ, ନଥିଲା ସମୁଦ୍ର, ଆକାଶ
ଶେଷ ସୀମାନ୍ତ ବିନ୍ଦୁଟି ବିବର୍ତ୍ତିତ ହେଉଥିଲା ମାନଦଣ୍ଡରେ
ଆଗରେ ଯୋଜନ ଯୋଜନ ବାଲୁଚର ।

[୨]

କେଉଁଠୁ କେଜାଣି କ୍ରନ୍ଦନ ଭାସି ଆସୁଥିଲା
ତା'ସାଥିରେ ବି ଶୁଣା ଯାଉଥିଲା ଏକ କରୁଣ ଚିତ୍କାର–
'ଫେରିଆସ ଭଗୀରଥ : ଫେରିଆସ ତୃଷ୍ଣାର ସାମ୍ରାଜ୍ୟକୁ
ପାନକର ଆକଣ୍ଠ ମରୀଚିକା । ଏହାହିଁ ତୁମର ଦୁର୍ମଦ ଭାଗ୍ୟ ।'
କିଏ କହିଲା ? ପଛକୁ ଚାହିଁଲା ପଦାତିକଟି ।
ଆଗରେ ସ୍ତୂପ ସ୍ତୂପ କଙ୍କାଳ । ହଠାତ୍ ତଡ଼ିତ୍ ବେଗରେ
କଙ୍କାଳ ସବୁ ଜାଗି ଉଠିଲେ,
ନାଚି ଉଠିଲେ ତା'ର ଚଉଦିଗ ।
'ହାୟ ! ହାୟ ! ଏ କ'ଣ ହେଲା ତୁମର ?'
ସେମାନେ ଟକ୍ ଟକ୍ ପାଟିକରି କହୁଥିଲେ-
'ତୁମର ଅଖଣ୍ଡ ସାମ୍ରାଜ୍ୟ ବା ସୂଚ୍ୟଗ୍ର ମେଦିନୀ
କିଏ ହରି ନେଲା ? ଫେରିଆସ ହେ ଋତ୍ୱିକ୍ ;
ଫେରିଆସ ଆର୍ଯ୍ୟପୁତ୍ର ;' ଛମ୍ ଛମ୍ ନୂପୁର ବାଜିଉଠିଲା
ତନ୍ୱୀଟି ନାଚି ବେଦମ୍ ହେଲା । ପ୍ରତି ପଲକରେ ପୁଲକ,
ଅପାଙ୍ଗ ନାଚୁଥିଲା ଖେମଟାର ତାଳେ ତାଳେ ।

ବୀଣା, ବେଞ୍ଜୋ, ଗୀଟାରର ସମନ୍ୱିତ ଝଙ୍କାର ଭାସି ଆସୁଥିଲା
ଏହାହିଁ ବୀଜମନ୍ତ୍ର– ମନେ ମନେ ପଦାତିକଟି କହିଲା ।
କୋଟି କୋଟି ଅର୍ବୁଦ ଅର୍ବୁଦ ସମାଧିରୁ ଜାଗି ଉଠିଲେ ଶବ
କୋଳାହଳରେ ଭରି ଉଠିଲା ପୃଥିବୀ ।
ସ୍ୱର୍ଣ୍ଣିମ ପ୍ରାସାଦଟିଏ ଉଦ୍‌ଭାସିତ ହେଲା ସୂର୍ଯ୍ୟାଲୋକରେ
ତାକୁ ସିଂହାସନଟିଏ ତୋଳିଧରିଲା । ବ୍ୟାଦିତ ଖଡ୍‌ଗଟିଏ
ଝଲସି ଉଠିଲା ତା'ର କଟୀ ଦେଶରେ
ନିକ୍ଷେତ୍ରୀ ପୃଥିବୀରେ ସେ ହିଁ ସମ୍ରାଟ ।

[୩]

ସେ କରତାଳି ଦେଲା । କୁର୍ଣ୍ଣିସ୍ କଲା କ୍ରୀତଦାସଟିଏ
ଅନୂଢ଼ା ଦାସୀ ଆଣିଲା ଶୋଣିତ ପିଆଲା,
ନାଇଁ ଆସୁଚି ଆଖି । ପକ୍ଷୀଟିଏ ଡେଣା ଫଡ଼୍ ଫଡ଼୍ କଲା
ପଞ୍ଜୁରୀରେ, ସମ୍ରାଟର ପାଦରେ ସୁବର୍ଣ୍ଣ ଶୃଙ୍ଖଳ ।
'ମୁକ୍ତକର ମତେ, ମୁକ୍ତକର ମତେ' ସେ ଆଦେଶ ଦେଲା
ପାରିଷଦବର୍ଗ ହସି ହସି ଲୋଟି ପଡୁଥିଲେ ।
ପଦାତିକଟି ପଛକୁ ପଛକୁ ଚାହିଁଲା
ଅନେକ ଜନ୍ମ ପଛରେ । ସବୁ ଅତିକ୍ରମି ଯିବାକୁ ହେବ ।
ସେଇ ଛବିର ମୁହୂର୍ତ୍ତ ନିକଟକୁ
ଯେଉଁଠି ଜନ୍ମ, ମୃତ୍ୟୁ, ଅତୀତ, ଭବିତବ୍ୟ ଏକାକାର ।

[୪]

ପଛକୁ ପଛକୁ ଚାଲି ଚାଲି ବାଲୁଚର ସରୁ ନ ଥିଲା
ଆବର୍ତ୍ତିତ ବର୍ତ୍ତମାନର କେନ୍ଦ୍ରରେ ସେ ଘୂରି ବୁଲୁଥିଲା ।
ନିଜ ନାଭିକେନ୍ଦ୍ରରେ
କସ୍ତୁରୀ ମୃଗ ସମ ଗନ୍ଧ ଖୋଜୁଥିଲା କାକୁସ୍ଥ ସମୟର ଫର୍ଦ୍ଦରେ
ଶେଷ ପଦାତିକଟି ପ୍ରାତିଭାସିକ ଦୃଶ୍ୟରାଜି ଭିତରେ
ଖୋଜୁଥିଲା ନିଜକୁ ।

# ଦେବୀ

ପ୍ରମୋଦ କୁମାର ମହାନ୍ତି

ତୁମେ କ'ଣ ପାନ ଖାଉଥିବା ବ୍ରହ୍ମାଣ୍ଡ ସୁନ୍ଦରୀ
ଦଶରା ଭିଡ଼ରେ ? ତୁମେ କ'ଣ ଖରାବେଳେ
ପାଣି ଟୋପେ ଦେବାକୁ ଅକ୍ଷମ ଥିବା ନିର୍ବାକ ସହରର
ଖୋଲା ଟ୍ୟାପ୍ ପାଖେ କଳି କରୁଥିବା ବସ୍ତିବାଲା,
ଅଧୈର୍ଯ୍ୟ ଗୃହିଣୀ, ନା ତୁମେ ସକାଳର
ଆଲୁଅରେ ଭାସୁଥିବା ଗାଁର ତୁଠରେ
ଅଧାଲୁଚା, ଅଧାଦେଖା ସଂକ୍ଷିପ୍ତ ଚାହାଣୀ

ଅନ୍ଧାରରେ ଏକାକାର ସିମେଣ୍ଟ ଜଙ୍ଗଲ
ଡୁବିଗଲା ବେଳେ ତୁମେ ରାତିସାରା ବର୍ଷାର କୋମଳ ଛନ୍ଦ
ବହୁତ ଶବ୍ଦରେ ଯାହାସବୁ କହିହୁଏ ନାହିଁ ସେହିଭଳି
ତୁମେ ଏକ ଆକୁଳାନୁଭବ। ସବୁ ଭାବନାର ଉପରେ ହିଁ
ଭାସୁଥିବା ବୋଉର କୋଳରେ ଘୁଞ୍ଚି ପାଞ୍ଚି
ଶୋଇଥିବା ଶିଶୁଟିର ନିରାପଦ ନିଦ।

ଆଜି ଏଇ ରକ୍ତ ବସ୍ତ୍ର ପରିଧାନ, ଆଲୋକର ସ୍ତମ୍ଭଭଳି
ରୂପ। ପେଟ୍ରୋମାକ୍ସ ଆଲୁଅରେ ଦାଉ ଦାଉ ଜରିକାମ।
ଶୁଖିଲା ମନ୍ଦାର ପରେ ମହିଷର ରକ୍ତ। ତୁମକୁ ଚିହ୍ନାଏ
ଆଗୋ ମହାଦେବୀ : ପ୍ରାଣବନ୍ତ ହେ ଭାରତବର୍ଷ !!

# ଭବିଷ୍ୟ ମାଳିକା

ଦିଲୀପ ଦାସ

ଫୁଲ କୁଂଡ଼ର ବାସ୍ନା
ନର୍କ କହ ବା ସ୍ୱର୍ଗ କହ
କିଛିଇ ମାନେ ହୁଏନା
ନିର୍ବୋଧ ପ୍ରେମିକା ଯାହା ସାକ୍ଷୀରଖେ ଧ୍ରୁପଦ ସମୟକୁ
ଭୁଲିବାକୁ ଚିରାଚରିତ ସୁଖରେ ଶାମୁକାର କ୍ଷୟ କ୍ଷତି
ବିଷାଦ ମର୍ମଦାହ ଗର୍ଭୋଦୟ ଗ୍ଲାନି ଓ ଯନ୍ତ୍ରଣା ।

ନିରୁଦ୍ଦରିତ ଚିଠି
ଦୁଃଖ କହ ବା ସୁଖ କହ
ନା ଏଇଠି ନା ସେଇଠି

ସୁଖମାନେ କେମିତି କେଜାଣି ? ଦୁଃଖ : ଯାହା ପାଚିଲା
ବେତଫଳ ଭଳି ଆଖିରେ ଧରାପଡ଼େ । ସାପ ଭଳି
ନିଃଶ୍ୱାସରେ ବୁଝାଯାଏ ଦୁଃଖର ପ୍ରବାହ । ଶୂନ୍ୟର ଓଜନ
ଭଳି ଓଜନ ବି କରିହୁଏ ପାହାଡ଼ ପାହାଡ଼ ବୟସ୍କ ଦୁଃଖଂକୁ
ନିର୍ବୋଧ ପ୍ରେମିକା ଯାହା ବୁଝେ ନାହିଁ
ସାକ୍ଷୀରଖେ ଧ୍ରୁପଦ ସମୟକୁ ।

ସମୟ କି ମହାନଦୀ
ଚିତ୍ରୋତ୍ପଳା, ଋଷିକୂଲ୍ୟା
ଯାହାସବୁ ମିଶିଯାଏ ମନ୍ୱନ୍ତର ମହାକାଳ କଲ୍ଲୋଳ ସାଗରେ
ବିଶ୍ୱାସ କର
ତମ ଦେହ ଅହଲ୍ୟା ହେଉ
ଦିନେ ନା ଦିନେ ତ ସୀତା ହେଲେ ବି ସତୀତ୍ୱ ପରୀକ୍ଷା ହେବ
କେବେ ନା କେବେ ଉଦେ ହେବ ଆଷାଢ଼ର ସଜଳ ବଉଦ ।
ନଦୀ ହେବ ଗର୍ଭବତୀ,
ଶ୍ରାବଣର ଜଳ
ବନ୍ୟା ଭଳି ଗ୍ରାସିଯିବ ଚିରାଚରିତ ଉପତ୍ୟକା ଅଧିତ୍ୟକା
ନବ ଦୂର୍ବାଦଳ,
ଘନ ବନରାଜି ନୀଳ ସାଗୁଆ ଡାଳ
ଓ ତମାଳ ॥

# ସ୍ୱର୍ଗାଦପି ଗରୀୟସୀ

ନିରଂଜନ ପାଢ଼ୀ

ତୁ ସେଦିନ କହୁଥିଲୁ ନା ?
ପୁଅକୁ କୋଳେଇ ନେଲେ
ତୋ କୋଳରେ ଲୁଚିଯାଏ
ଏ ସାରା ସଂସାର
ତାକୁ ଥରେ ଆଉଁସି ଦେଲେ
ତୋ ଆତ୍ମାକୁ ଥରଉଥିବା
ସମୁଦ୍ରର ଢେଉ ପରି
ଅବିଶ୍ରାନ୍ତ ଦୁଃଖର ଲହଡ଼ି
ହୋଇଯାଏ ସ୍ଥିର ।

କିନ୍ତୁ ଆଜି.....
କେଉଁଠି ସେ ପୁଅଟି ତୋର ?
ଉଡ଼ନ୍ତା ଚଢ଼େଇଟିଏ
ଉଡୁଛି ତ ଉଡୁଛି
ଗୋଟିଏ ବସାରୁ ମୋହ ତୁଟିଗଲେ....
ବସାକୁ ବସା
ଜାଗାକୁ ଜାଗା
ଖୋଜୁଛି, ଗଢୁଛି
ବସା ପରେ ବସା
ତୋ କୋଳର ଛାୟା ବସା ଠାରୁ
ଆହୁରି ସୁନ୍ଦର
ନିରାପଦ ବସା ।

ଆଉ, ଆଜି ତୋ ସାମ୍ନାରେ.....
ସେଇ ଚତୁର ମାୟାମୟ
ସନ୍ତାପିତ ପୃଥିବୀର ନାଚ
ଖରା ମହଲଣ ହେଲେ
ଗାଆଁ ତୋଟା ଗହଳିଆ
ଗଛଂକର ଲମ୍ବାଳିଆ ଛାଇ ପରି
ସମୟ- ସାଗର କୂଳେ

ତୋ ଡୁବିଲା ମନରେ ଆଖିରେ
ବୟୋବୃଦ୍ଧ ଛାଇଙ୍କର ନାଚ ।

ଶିରାମୟ ଅସ୍ଥିର ପାଦରେ
ଆଶାବାଡ଼ି ଠୁକୁଠୁକୁ କରି
ତୁ ଆଜି ଅଣ୍ଡାଳୁଚୁ
ଚଢ଼ୁଚୁ ଓ ଓହ୍ଲାଉଚୁ
ସୁଖ ଦୁଃଖ ସ୍ମୃତିର ପାହାଚ ।

ଉଡ଼ନ୍ତା ଚଢ଼େଇ ଆଜି
ତୋ ଠାରୁ ବହୁତ ଦୂର
ହାତ ତୋର ପାଏ ନାହିଁ
ତାକୁ କୋଳେଇ ନେଇ
ଶାନ୍ତ କରିଦେବା ପାଇଁ
ତୋ ଚିତ୍ତରେ ଚହଲୁଥିବା
ଦୁଃଖର ଜୁଆର ।

କେଉଁ ଉପାଦାନେ ତୋର
ସୃଷ୍ଟି କେଜାଣି....
କିପରି ବିଂଧାଣୀଟିଏ
ତୋ ରୂପକୁ
ଆଂକିଛି କେଜାଣି....
ଆନଂଦାଶ୍ରୁ ତଥାପି ଝରଇ ତୋଠୁଁ
ଆଦ୍ୟ ଆଶିଷର ।

# ଜୀବନ ଓ ମରଣରେ ତୁମେ ହିଁ ସୁନ୍ଦର

**ଫନୀ ମହାନ୍ତି**

କେଉଁ ଭାଷାରେ ବର୍ଣ୍ଣିବି ତୁମ ଇତିହାସ
କେଉଁ ଶବ୍ଦମାଳାରେ ସଜେଇଦେବି
ହୃଦୟର ଜୟମାଲ୍ୟ,
ସବୁ ଭାଷାର ସବୁ ଶବ୍ଦ ଯେ ନିଅଣ୍ଟ
ତୁମ କଥା କହିବାକୁ। ତୁମ କଥା କହି
ବସିଲେ ଏ ଜୀବନକାଳ ଶେଷ ହୋଇଯିବ;
ନୁଖୁରା ସଳିତାର ଉତ୍କଟ ଗନ୍ଧରେ ପୁଣ୍ୟ
ଦେବାଳୟ ପରି ମହ ମହ ବାସୁଥିବା ତୁମ ଘର
ଭରପୂର ହେବ; ଯେଉଁ ଘର ଦିନେ ଥିଲା
ତୁମ ପାଇଁ ଅତି ପ୍ରିୟ, ଅତି ଆପଣାର।

ଅଭିଧାନର ସବୁ ଶବ୍ଦଯେ ନିଅଣ୍ଟ ତୁମ
କଥା କହିବାକୁ, ଯେତେ ଢଙ୍ଗରେ, ଯେତେ
ବାଗରେ ଲୁଚକାଳି ଖେଳୁଥିବା ଶବ୍ଦମାନେ
ଧରାଦେଲେ ବି ହାତମୁଠାରେ,
ଜୀବନରେ ତୁମେ ଯେତିକି ସୁନ୍ଦର, ମରଣରେ
ତୁମେ ସେତିକି, ତୁମ ପାଇଁ ଇହକାଳ, ପରକାଳ
ବୋଲି କିଛି ନାହିଁ, ଅନ୍ୟ ଜୀବନ, ଅନ୍ୟ ଜଗତ
ଅଛି କି ନାହିଁ ଜଣା ନାହିଁ।

ସ୍ନେହମୟୀ ନାରୀଟିଏ ପରି ତୁମ ପଣତ
କାନିରେ ବନ୍ଧା ସାରା ବିଶ୍ୱ
ତୁମେ ତ ଭୁବନମୟୀ ସ୍ୱଭାବେ ସୁନ୍ଦର
ତୁମ ଗୁଣ ଗାଇବାକୁ ଭାଷା ନାହିଁ ମୋର।
ମୋର ସକଳ ଅପାରଗତା ପାଇଁ କ୍ଷମାକର
ମତେ, କ୍ଷମାକର ମୋର ଅନ୍ଧ ବାଚାଳତାକୁ,
ଉଗ୍ର ଅଭିମାନକୁ
ସ୍ପର୍ଶ ଆତୁର ଆକୁଳ ଆତ୍ମାକୁ।

କେଉଁଠି, କେଉଁ ମନ୍ୱନ୍ତରରେ ତୁମର
ଅନନ୍ତ ଶୟନ : କେଉଁ ଅଦୃଶ୍ୟ ନିହାରିକାରେ
ତୁମର ସହାବସ୍ଥାନ ,
ବିଚରା ଭଣିତା ବାନ୍ଧୁଥିବା କବି କିଛି ଜାଣେ ନାହିଁ,
କୂଳ କିନାରା ପାଏ ନାହିଁ
ଭଉଁରୀରେ ଉବୁଟୁବୁ ହୁଏ,
ସ୍ୱପ୍ନରେ ବିଳିବିଳାଏ, ମାଛି ଅନ୍ଧାରରେ
ଟହଟହ ଲାଲ ସୂର୍ଯ୍ୟ ଦେଖି ଭୟ ମିଶା
ଆନନ୍ଦରେ ଶିହରି ଯାଏ ।

ତୁମ ହାତ ଗଢ଼ା ବାଡ଼ି ବଗିଚାରେ
ବାତୁଳ ପବନ ପରି ଥରକୁ ଥର ଧକ୍କା ଖାଏ,
ଏକା ଏକା ନିଃସଙ୍ଗ ଜୀବନ କାଟୁଥିବା
ବନ୍ଧୁଟିର ଡାଏରୀ ପଢ଼େ,
ପ୍ରତିଟି ଧାଡ଼ିରେ, ପ୍ରତି ଅକ୍ଷରରେ
ତୁମ ହସ ହସ ମୁହଁ
ଉଙ୍କି ମାରୁଥାଏ ।

ନିତି ସଞ୍ଜ ସକାଳରେ, ତୁମ ପରିତ୍ୟକ୍ତ
ପୃଥିବୀର 'ବର୍ଣ୍ଣରାଗ' ଦୃଶ୍ୟରେ ବିଭୋର
ଯେଉଁ ଦୁର୍ଲ୍ଲଭ ଲୋକରେ ଥାଅ ପଛେ
ଜୀବନ ଓ ମରଣରେ ଲୋଭନୀୟ
ତୁମେ ଶ୍ୟାମ, ତୁମେ ହିଁ ସୁନ୍ଦର ।

ଅସମ୍ପୂର୍ଣ୍ଣ ରହିଗଲା ଶେଷ କରିବାର ଶେଷ ଧାଡ଼ିଟି
ଯାହା ପରିପୂର୍ଣ୍ଣ ହୋଇପାରେ
ନ ହୋଇବି ପାରେ ଅନ୍ୟ ଜୀବନରେ, ଅନ୍ୟ
ଜଗତରେ, ଯଦିବା ସେପରି କିଛି ଜୀବନ,
ଜଗତ ଥାଏ ଆମ ଅଲକ୍ଷ୍ୟରେ ।

# ଆଶ୍ୱାସ

ରାଜେନ୍ଦ୍ର କିଶୋର ପଣ୍ଡା

ଯୋଉଠି ଯେତେବେଳେ ଯିଏ ବି କାନ୍ଦୁ,
ତା'ରି ପାଖରେ
ଠିଆ ହୁଅନ୍ତି ମୁଁ
ଘଡ଼ିଏ।
ପୋଛିଦିଅନ୍ତି ଲୁହ, କହନ୍ତି :
ମଣିଷ : କାନ୍ଦନା।

ହୃତ୍‌ସ୍ପନ୍ଦନ ଅଛି ବୋଲି ତ
ସୃଷ୍ଟି ରହିଚି ଆଜିଯାଏ।
ନିଦା ଢଗଦଳ ପଥର ମଝିକୁ ପଶିଯାଇ
ଦି'ଥର ଦୁକୁଦୁକୁ ହବାକୁ ମୋର
ପ୍ରବଳ ବାଞ୍ଛା :
ନିଦାରୁଣ କିନ୍ତୁ ବାସ୍ତବତା —
କ୍ଷତ ଘା' ପୋକ ନଖ ଦାନ୍ତ ଲିଙ୍ଗର
ଦୁଃସହ ଅନିବାର୍ଯ୍ୟତା।
ହଠାତ୍ ହୃତ୍ଶୂନ୍ୟ ହୋଇଯିବା କେବେ ସମ୍ଭବ
ସାରା କାୟା ଆଉ ଆତ୍ମା ?

ତୋର ହୃତ୍‌ପିଣ୍ଡର ଅଳିନ୍ଦ ନିଳୟର
ଗଳି ଗଳି ଘର ଘର ଏନ୍ତୁଡ଼ି ଏନ୍ତୁଡ଼ି
ଅହର୍ନିଶ ଲାଲନିଆଁ ଶାଗୁଆ ବର୍ଷାରେ
ଅଭିଷିକ୍ତ ପବିତ୍ରିତ ହେଉଚି, ମଣିଷ :
ଯୋଉଠି ଯେତେବେଳେ ଯିଏ ବି କାନ୍ଦୁଛି,
ସେଇଠି ସେତେବେଳେ
ବିଷଣ୍ଣ ବାଳକ ପରି ତା'ରି ଭିତରେ
ମୁଁ ଇ କାନ୍ଦୁଛି।
ଜଡ଼ ଆଉ ଜୀବନ୍ତ ସବୁଠି
ହୃତ୍‌ସ୍ପନ୍ଦନ ଅଛି ବୋଲି ତ
ସୃଷ୍ଟି ରହିଚି ଏ କ୍ଷଣ ଯାଏ।

କେଜାଣି କେତେ ଆଲୋକବର୍ଷ ଦୂରରେ
ଏଇ ପୃଥିବୀରେ
କୋଉଠି ଗୋଟାଏ ମହୋତ୍ସବ ହେଉଛି
ଧୂମା ଆଲୁଅ ଦିଶୁଚି ଦିଗନ୍ତ ସେପାଖ ଦୂର ବିନ୍ଦୁରେ,
ଅତି କ୍ଷୀଣ ଧ୍ୱନିର ଆଭାସ ଶୁଭୁଚି ତା'ର
ହୃତ୍‌ପିଣ୍ଡ ଭିତରେ ।
ଦିନେ ତୁ ବିଷାଦ କ'ଣ ବୁଝିବୁ ନାଇଁ, ମଣିଷ !
କାନ୍ଦନା ।

# ନୀଳକଣ୍ଠ

ବିଜୟିନୀ ଦାସ

ମୁଁ ଯାହାକୁ ଅନୁଭବ କଲି
ସେ 'ଅମୃତ'
ଯା'ର ଗନ୍ଧ ଆଘ୍ରାଣ କଲି,
ସେ ମୋର 'ବିଶ୍ୱାସ' :
ଯା'କୁ ଦେଖି ଅପଲକ ମୁଗ୍ଧ ହେଲି
ସେ ମୋର 'ପ୍ରେମ'।
ଯା'କୁ ନିବିଡ଼ ଭାବେ ସ୍ପର୍ଶ କଲି
ସେ ମୋର 'ପ୍ରଣୟ'।

ସକଳ ଅମୃତ, ବିଶ୍ୱାସ ଓ ପ୍ରେମ ପ୍ରଣୟକୁ
ଏକତ୍ରିତ କଲି,
ଏକାନ୍ତ ଆତ୍ମୀୟ ଭାବେ ତା'କୁ ଚୁମ୍ବନ କଲି
ସେ 'ବିଷ' ପାଲଟିଗଲା।

# କଥା

ହରପ୍ରସାଦ ଦାସ

କହିଦେଲା ପରେ
କୁଆଡ଼େ ଯାଏ କଥା ?
ସିଧାସଳଖ ଯାଏ
ଦୂର ହୋଇ ସାରିଥିବା
ଆଘାର ସୈକତ ଉପରକୁ
ଜହ୍ନରାତିର ଜୁଆର ଭଳି ?

ନା ଜଳି ଜଳି ଜଳି
ଭୁଲିଯିବାର ଚିତାରେ
ଅଙ୍ଗାର ହୋଇ ଦମକେ
ପବନର ଅନ୍ଧ ଆଖିରେ ?

ନା ମୁଁ ଜାଣେ
ନା ତମେ ଜାଣ,
ଦିନ ଶେଷରେ ମୁଠାଏ
ଗୋଡ଼ି ଧୂଳି
ହାତରେ ଧରି
ଫେରିବାର କଥା ଆମର
ଫେରିବା ।

ଆହୁରି ଟିକିଏ
ସୁନ୍ଦର କରି
ସଜାଇଦେବା ମରଣକୁ
ମାଟିର କଳସ ଉପରେ,

ଓଁ କହି
ଚେର ସମେତ
ଓଟାରି ଆଣିବା
ଅପରାଜିତାର
ନୀଳପାଂଶୁଳ ଲତାଟିକୁ ।

ହୁଏ ତ,
ତଥାପି ରହିବ

କଥା ପଦକ
ସେଇଠି —
ଯୋଉଠିକି
ଆଖିପାଇବ ନାହିଁ
ଆମର ।

ଯୋଉଠି ତମେ
ମାଟିରେ ଗଢ଼ା
ଓଠକୁ ତମର
ଗଢୁଥିବ ଆହୁରି ଥରେ
ନୂଆକରି;
ରଙ୍ଗଦେବା ଆଗରୁ
ଯୋଉଠି
ସବୁତକ
ଭଙ୍ଗା ଉଜୁଡ଼ା ଶବ୍ଦକୁ
ଏକାଠି କରି
ମୁଁ ଅର୍ଥ ଲେଖୁଥିବି
ପୁନର୍ଜନ୍ମର ।

କଥାପଦକ
ଯିବାକୁ ହୁଏତ
ଚାହୁଁଥିବ
ଆଉ ଗୋଟିଏ
ଅଧ୍ୟାୟ ଭିତରକୁ ।

ହେଲେ ବନ୍ଧ ଡେଇଁ
ବାହାରିଯିବାର
ସାଧ ନାହିଁ ତ :
କହିଦେବାହିଁ ବୋଧହୁଏ
ସବୁଠାରୁ ବଡ଼ ଆଲେଖ୍ୟ ଆମର
ନୀରବତାର ମୁଖଶାଳାରେ,

ମୂକ ସନ୍ଧ୍ୟାକୁ
ହଠାତ୍ ମୁଖର କରିଦେବା
ନୀଡ଼ ଫେରନ୍ତା ଚଢ଼େଇଙ୍କ
ଅର୍ଥହୀନ କୋଳାହଳରେ —
ଏ କ'ଣ କମ୍ :

# ଅମୃତ ମଣୋହି

ଶକୁନ୍ତଳା ଦେବୀ

ମୁଁ ରହିଛି ତୋ ସାମ୍ନାରେ, ପଛଆଡ଼େ
ବାମ ଏବଂ ଦକ୍ଷିଣ ପାର୍ଶ୍ୱରେ
ମୁଁ ରହିଛି ଜଳ ସ୍ଥଳ ଅନଳ ଓ ପବନ ଭିତରେ।
ଯେତେ ଆଶା, କାମନାର ଜଳବିନ୍ଦୁ
ଦ୍ରବୀଭୂତ ହୋଇ ସାରି
ମେଘଶୂନ୍ୟ ମନ ତଳେ ସମାଧିସ୍ଥ ହୁଏ
କି ବେଗରେ ଧାଏଁ ମୁହିଁ ଅଧିକକାଳସାର
ସେଇ ବିପନ୍ନ ମୋହକୁ
ଆଦରରେ ଗେହ୍ଲା କରି ଛାତିରେ ଲଗାଏ।
ଅଥଚ ମୁଁ କାୟା ସାଥେ ଛାୟା ଭଳି ଏତେଦିନ ରହି
ପାର୍ ହୋଇଯିବା ପାଇଁ ଅଥଳ ଜଳଧିମାଳା
ଦୂରେ ଥାଇ କଙ୍କଟିଏ ଫିଙ୍ଗି ପାରିଲିନି
ଅଥବା ପହଁରିଯାଇ ସେ ପାଖରେ କୂଳ, ଛୁଇଁ ପାରିଲିନି
ମରୁଭୂମି ଭଳି ଏଇ ହାହାକାର
କରୁଥିବା ସମଗ୍ର ବିଶ୍ୱରେ
ପ୍ରଶାନ୍ତିର ଧାରେ ଜଳ ସିଞ୍ଚି ପାରିଲିନି
ତୁମେ ଯେବେ ଡାକ ଦେଲ ଉଚ୍ଚସ୍ୱରେ
କଣ୍ଠ ତଟ ଫାଟି ପଡୁଥିଲା
ମୋ ଆଖିର ନିଦ୍ରା କ'ଣ ସୃଷ୍ଟିର ପ୍ରଳୟ ହୋଇ
ବଟ ପତ୍ରଟିଏ ହୋଇ ଭାସିଯାଉଥିଲା ?
କେମିତି ନିର୍ମମ ହେଲି କଠିନ ମୁଁ ଏଡ଼େ ନିଦାରୁଣ
କ'ଣ ମୁଁ ଦେଖୁଥିଲି ପାଖେ ରହି ଦୂରେ ଦୂରେ ଚାହିଁ
ତୁମ ପ୍ରତି ଲୋମମୂଳ ଅଣୁକଣିକାରେ
କାମନାରେ, ବାସନାରେ, ଅଦୃଶ୍ୟ ଇଚ୍ଛାରେ
ମୋହଗ୍ରସ୍ତ, ପାପରାଶି, ଧର୍ମ ଆସ୍ଥାନରେ
ମୁଁ ଥିଲି ଯେଉଁପରି ଏବେ ବି ରହିଛି
ମିଛ ଆଶା, ଆଶ୍ୱାସନା ପ୍ରତି ପ୍ରାଣେ ଜଗେଇବା ପାଇଁ

ଦାରୁଭୂତ ମୁରାରି ମୁଁ
ବାରମ୍ବାର ନୂଆ ଆଶା ନୂତନ ଭାବରେ, ନବକଳେବର ନେଇ
''ଅମୃତ ମଣୋହି'' ଯୋଗ ଭୋଗ କରୁଅଛି ।

# ଓଡ଼ିଶା

ନୃସିଂହ ପ୍ରସାଦ ତ୍ରିପାଠୀ

ମୋ' ଘର କାନ୍ଥରେ ମାନଚିତ୍ର ଝୁଲୁଚି
ପୃଥିବୀର ମାନଚିତ୍ର;
ଦୁଇ ଭାଗ ସମୁଦ୍ର ଓ ଗୋଟିଏ ଭାଗରେ
ଭିନ୍ନ ଭିନ୍ନ ଦେଶ ।
ତା' ଭିତରୁ ଚିହ୍ନା ଚିହ୍ନା ଲାଗୁଚି ଭାରତ ।
ରେଖାରେ ଚିହ୍ନିତ ସେଇ ଭାରତବର୍ଷର
ଗୋଟିଏ କୋଣରେ ।
ସମୁଦ୍ର ପାଣିରେ
ନାଇଁ ନାଇଁ, ମଣିଷ ଲୁହରେ ଓଦା ଓଦା
ଏତେ ଟିକେ ଜାଗା -
ମୂଷାଛୁଆ ପେଟ ପରି ଦିଶୁଚି ଓଡ଼ିଶା ।

ମାଇଲ ମାଇଲ ଧରି ଶୁଖିଲା ଓ ଟାଆଁସିଆ ମାଟି
କେତୋଟି ଅସଫଳ ନଦୀ -
ଯେଉଁମାନେ ଅସହିଷ୍ଣୁ ହୋଇଯା'ନ୍ତି ବର୍ଷା ଦିନେ
ଛୋଟ ବଡ଼ କେତେ ବନ୍ଧ, କାଁ, ଭାଁ, କାରଖାନା
ମାଛ ଖେଦା ପରି ଲାଗୁଥିବା କେତେ ଗାଁ,
ମଝିରେ ମଝିରେ କିଛି ନିର୍ଜୀବ ସହର;
କାଟୁ କାଟୁ ବାକି ରହି ଯାଇଥିବା ଦାଢ଼ି ପରି
ଶେଷ ହୋଇଯାଉଥିବା ଜଙ୍ଗଲର ଅବଶିଷ୍ଟ ଅଂଶ;
ତା' ଭିତରେ ହଳ ବଳଦଙ୍କୁ ଧରି,
ଆକାଶକୁ ଚାହିଁଥିବା ଅସଂଖ୍ୟ ନିରୀହ ମଣିଷ ।

ମୋ' ଘର କାନ୍ଥରେ ଓଡ଼ିଶା ଝୁଲୁଚି
ପଛରେ କେବଳ ଭଙ୍ଗାରୁଜା ଅଧାପୋଡ଼ା
ମନ୍ଦିରର ଦୁଃଖ ଇତିହାସ
ସେ ଛାଇର ଶକ୍ତି ଗଢ଼ିବାକୁ
ନୂଆ ଭବିଷ୍ୟତ । ବର୍ତ୍ତମାନ ତା'ର ଅନ୍ଧ ।
ମାଟି ନାହିଁ, ପାଣି ନାହିଁ ଆକାଶ ବି ନାହିଁ
କେବଳ କଙ୍କାଳରେ ବଞ୍ଚୁ ଥିବା ଥୁରୁଥୁରୁ

ବୁଢ଼ୀଟିଏ; ନିସ୍ପୃହ ଉଦାସ ପାହାଡ଼ର
ସହିଷ୍ଣୁତା ପରି,
ଢୁଲୁ ଢୁଲୁ ଅନାଇଚି ଅପେକ୍ଷାରେ
କାଳ କାଳ ଧରି।
ତା' କୋଳରେ ମଣିଷଙ୍କ ପରି ଦିଶୁଥିବା
ଜୀବଙ୍କର
ଜନ୍ମଠାରୁ ମୃତ୍ୟୁଯାଏ ଭୋକ ସହ କେବଳ ସଂଗ୍ରାମ।

ମୋ' ଘର କାନ୍ଥରେ ଛଟ୍‌ପଟ୍ ହେଉଚି ଓଡ଼ିଶା
ମୋ' ପୁଅ ହାତର ଦୁଇ ଆଙ୍ଗୁଠି ସନ୍ଧିରେ
ଛାଟିପିଟି ହେଉଥିବା ଙ୍କିଟିଏ ପରି
ଏଯାଏ ବି ହରାଇନି ଉଡ଼ିବାର ଆଶା।

ମୋ' ଘର କାନ୍ଥରେ ଝୁଲୁଚି ପୃଥିବୀର ମାନଚିତ୍ର
କେତେ ଦେଶ, ସମୁଦ୍ର ଓ ପାହାଡ଼ ପର୍ବତ,
ସବୁ ଠିକ୍ ଠାକ୍, ଓଡ଼ିଶା ବ୍ୟତୀତ।
ମୁଁ କାନ୍ଦୁଚି
ଚିତ୍କାର କରୁଚି -
କାହିଁ, ମୋ' ଓଡ଼ିଶା କାହିଁ?
କେଉଁଠାରେ ହଜିଗଲା କୁହ?
ସେଠାରେ ଏବେ କେବଳ ଦିଶୁଅଛି
ବୁନ୍ଦାଟିଏ ଅଧାଶୁଖା ଲୁହ।

# କେତେଦୂର

ଗୋପାଳକୃଷ୍ଣ ରଥ

ଯିଏ ଜଗି ବସିଛି ଘାଟ ତାକୁ ପଚାର :
ଏ ନଦୀରେ କେତେ ପାଣି ବହିଯାଇଛି
ବୋଧହୁଏ ସମୁଦ୍ରରୁ ବେଶୀ ପାଣି ହେବ
କେତେ ଶତାବ୍ଦୀ ଶୋଇଯାଇଛି ପରାଜୟରେ
ବୋଧହୁଏ ସମୟ ଏତିକି ଲମ୍ବ ହେବ ତା'ର ଗୋଡ଼।

ଏମିତି ସେ ଜଗିବସିଛି
ପୋଖତୀ ମାଆଟିଏ ତା' ପୁଅକୁ ଜଗିଲା ପରି;
ଏମିତି ସେ ଚାହିଁ ବସିଛି
ଆଖିରୁ ରକ୍ତ କ୍ଷରି
ମନ୍ଦାର ଫୁଲ ଫୁଟିଲା ପରି;
ନିର୍ବାକ ହୋଇ ସେ ବସିଛି ଯେ ବସିଛି
ସବୁ ସତ୍ୟକୁ ଓ ସବୁ ସ୍ୱପ୍ନକୁ
ସଜାଡ଼ି ସଜାଡ଼ି ରଖିସାରିବା ପରେ
କିଂକର୍ତ୍ତବ୍ୟବିମୂଢ଼ ହୋଇଯିବା ପରି।

ଦିନେ ଉତ୍କଣ୍ଠାର ଜହ୍ନଟିଏ ଲଟକି ଯାଉଥିଲା
　　　　ତା'ର ତରୁଡାଳରେ
ଦିନେ ଉଲ୍ଲାସର ହାଲ୍‌କା ହାଲ୍‌କା ବେଲୁନ୍
　　　　ଛାଇଯାଇଥିଲା ତା'ର ଉପତ୍ୟକାର ଆକାଶକୁ
ଦିନେ ବସନ୍ତ ଫୁଟାଇ ଦେଇଥିଲା
　　　　ନାନା ରଙ୍ଗର ନାନା ବାସ୍ନାର ଫୁଲ
ଦିନେ ଅନୁରାଗ ଉଡ଼ାଇ ଦେଇଥିଲା
　　　　କେତେନା କେତେ ପ୍ରଜାପତି ତା'ର ଉଦ୍ୟାନରେ
ଏବଂ ଚକ୍ରବାଳରୁ ଭାସିଆସୁଥିଲା ସ୍ୱର ବଂଶୀର
　　　　ଚହଟି ଆସୁଥିଲା ପ୍ଲାବନ ସାବ୍‌ନା ନିଆଁର।
ଦିନେ ଖସି ଯାଇଥିଲା ଚୂନ ସିମେଣ୍ଟ ରଙ୍ଗ ତୀରବର୍ତ୍ତୀ ଅଟ୍ଟାଳିକାରୁ
ଦିନେ ଶେତା ପଡ଼ିଯାଇଥିଲା ପ୍ରଜାପତି ଋତୁ ସଂହାରରେ
　　　　ଋତୁଚକ୍ରର ମଧ୍ୟମ ପର୍ବରୁ, ଅଣଇପ୍‌ସିତ ଲଗ୍ନରୁ।
କେଉଁଠି ପାକ୍‌ଲା ଦଉଡ଼ି, ଘୋରିହୋଇ ଯାଇଥିବା କାତ

କେଉଁଠି ପାଣିରେ ବୁଡ଼ି ବୁଡ଼ି ଶିଉଳି ଘେରା କଅଁଳ ପଥର
କେଉଁଠି ଚେଇଁ ରହିଛି ସ୍ମୃତିର ସ୍ତବକଟିଏ
କେଉଁଠୁ ଆସି କେତେବେଳେ ଚହଲେଇ ଦେଉଛି ଛୋଟ ଝଡ଼ଟିଏ
କେଉଁଠି ଭଙ୍ଗାଦଦରା ଡଙ୍ଗାଟିଏରୁ ଶୁଭୁଛି ଲହରଟିଏ : ନିଃଶ୍ୱାସଟିଏ
କେଉଁଠି ଅଟକି ଯାଇଛି ଛନ୍ଦଟିଏ
ଚହଲି ଯାଇଛି ଯୁଗଯୁଗର ଲୁହ ବୁନ୍ଦିଏ ।

ଟାଣଟାଣ ଟାଆଁସା ନାକବାଲ
ଲୁଣ ଚରିଯାଇଥିବା ଖରଖସିଆ ଦିହ ହାତ
କୋରି ଖାଇଯାଇଥିବା ପାପୁଲି
ହଜାଇବାର ଶୁଖିଲା ସମୁଦ୍ର
ଓ ପାଇବାର ଭସାମେଘ
ପୂରିଲା ପୂରିଲା ଆକାଶ ସାଇତି ରଖିଥିବା ଦୁଇ ଆଖି
ଅସ୍ୱାଭାବିକ ଦୃଢ଼ତାର ଗୁମ୍‌ସୁମ୍ ମୁହଁଟି
ଜଗି ବସିଛି ଘାଟ ।
ଯିଏ ଜଗିବସିଛି ଘାଟ
ତାକୁ ପଚାର :
ବଞ୍ଚିବାରୁ ଜୀଇଁବା କେତେଦୂର
କେତେଦୂର ନଈର ଉତ୍ପତ୍ତିରୁ ଅବଲୟ ଧାର
କେତେଦୂର ନୀଳ ଆଲୁଅରୁ ନୀଳ ଅନ୍ଧକାର : :

# ନିଷ୍ଫଳ ଅଭିସାର

ପ୍ରତିଭା ଶତପଥୀ

[୧]

କେହି ବୁଝିଲେ ନାହିଁ।
ପ୍ରଚଳିତ ଭଲ ମନ୍ଦ ନିକିତିରେ ତଉଲିରେ
ମୋ'ର ଏମିତିକା
ନିଝୁମ ରାତି ଅଧରେ
ଶେଯରେ ଅନୁପସ୍ଥିତ ରହିବା ଓ
ପାହାନ୍ତାକୁ ପୁଣି
ଥରି ଥରି ଫେରିବାଟା:
କିପରି ବା ଭିନ୍ନ ଭାବେ ବୁଝିଥାନ୍ତେ ?
ଫେରିଆସି ଘରେ ଗୋଡ଼ ଦେଉ ନ ଦେଉଣୁ
ନିନ୍ଦାରେ ଅପବାଦରେ ପୋତି ଦେଲେ ମତେ।

ମୋ ପାଟି ଫିଟିଲା ନାହିଁ, ସ୍ୱର ହଜିଗଲା
ବିଷଣ୍ଣ ସ୍ୱାମୀଙ୍କ ମୁହଁ
ଛାଇ ଛାଇ ପିଲାଙ୍କ ଆଖିକୁ
କେମିତି ମୁଁ ବୁଝେଇବି,
କାହିଁକି ବା ଉଠିଗଲି ଦୁଆର ମୁକୁଳା ରଖି
ନିଦ ଭାଙ୍ଗିଗଲା ମୋର କାହାର ଡାକରେ ?

[୨]

ଚାଉଁକିନା ନିଦ ଭାଙ୍ଗିଗଲା
ଝପ୍ ଝପ୍ ଅନୁଚ୍ଚ ଶବ୍ଦରେ
ଉଛୁଳିଲା ଘର ଦ୍ୱାର
କେମିତି କେଜାଣି
କୁମାରୀ ଦିନର ମୋର ଆବେଗ, ଆକାଂକ୍ଷା, ସ୍ୱପ୍ନ
ଏତେ ବେଶୀ ସଜୀବ, ସତେଜ ଥିଲେ,
ଅଚାନକ ଜିଦ୍ ଲଗେଇଲେ
ଏ ରାତି ଆସିବ ନାହିଁ।
ଆଜିର ଏ ସୁଶୋଭିତ

ଝଟକୁଥିବା ସମୟ
ସମୟର ଅଭିମାନ
କାଲିକି ଥିବ କି ଆଉ
ଉଠ୍, ଆ, ରାତି ପାହିଯିବ।
ଅନ୍ଧାର ଭିତରେ
ଭୟ, କୁଣ୍ଠା, ସଂକୋଚର ଗୋଟି ଗୋଟି ପୋଷାକକୁ ଖୋଲି
ଫିଙ୍ଗି ଦେଲି
ଦୁଆର ମୁକୁଳା ରଖି
ସମ୍ମୋହିତ ପରି ଦଉଡ଼ି ପଳାଇ ଗଲି।

ଅଦୂର ନଈ ମଝିରେ ନୌକାଟିଏ ଭାସି ଯାଉଥିଲା।
ଅସ୍ପଷ୍ଟ ଛାଇଟେ ପରି ଦୂରକୁ ଦୂରକୁ,
ଜହ୍ନ ତା'ର ସବୁତକ କୁହୁକ ଏକାଠି କରି
ମୁଠା ମୁଠା ଛାଟୁଥିଲା
ନଈ ଛାତି, ଗଛବୃଛ ଏ କୂଳ ସେ କୂଳ,
ଆକାଶ ଗୋଟାକ ତାରା ଖୁଜୁବୁଜୁ
ତା' ଭିତରୁ ବାଛି
ମୋ ଭାଗ୍ୟ- ଡୋରିକୁ ଧରି
ମତେ ନଚାଉ ଥିବା ସେ ତାରାକୁ କହିଲି,
ଥରଟିଏ,
ଥରକ ପାଇଁକି ମତେ ଇଚ୍ଛା ଗତି ଲିଭିବାର
ଅନୁମତି ଦିଅ, ଦୟାକରି।

[୩]

ମୁଁ କ'ଣ ଜାଣି ନ ଥିଲି
ଅସମୟ, ଅକାରଣ ଏହିପରି ଚାଲିଗଲେ
ସବୁ ନିନ୍ଦା ଅପବାଦ
ମୋ ଚାରି କାନ୍ଥକୁ ଟପି
ସହଜରେ ମୋ ଛାତିରେ ଭେଦିଯିବ ବୋଲି ?
ବିହ୍ୱଳ ଏ ପରିବେଶ
ଡଙ୍ଗାର ଧୀର ଶବ୍ଦ, ଜହ୍ନ ନଈ, ପାଗଳ ପବନ ସହ ଏକାତ୍ମତା
ଉପଲକ୍ଷ୍ୟ ମାତ୍ର ବୋଲି ଜାଣି ନ ଥିଲି କି ?

ହୃଦୟ ହିଁ ଜହ୍ନରାତି ମୋର
ବ୍ୟାପିଥିଲା ସସାଗରା ଧରା
ରକ୍ତ ମୋର ନଈ ପରି ନାଚୁଥିଲା

ତା' ମଝିରେ ମୋ ଭଲ ପାଇବା
ନୌକା ହେଇ ଭାସୁଥିଲା
କି ଅବୋଧ ଛନ୍ଦଟି ଫୁଟାଇ,
ମୋ ଆବେଗ କମ୍ପୁଥିଲା ପବନ ସମାନ,
ସତରେ ମୋ ନିଜ ଛଡ଼ା
ନଥିଲେ ସେଠାରେ ଆଉ କେହି ବୋଲି କେହି ।

କ'ଣ କହି ବୁଝେଇବି
ଏଡ଼େ ଅଘଟଣ
ମତେ କିଏ ଡାକିଦେଲା, କାହାକୁ କହିବି ?
କହିଲେ ବୁଝିବେ କେହି ?

ତଥାପି ତ ମତେ
କହିବାକୁ ହବ ଦିନେ
ଦିନେ ନା ଦିନେ ତ
ପୃଥିବୀକୁ ସବୁକିଛି ଦେଇ ଯିବାକୁ ପଡ଼ିବ
କିଛି ଗୋପନୀୟ ଏଠୁ ନେଇଯାଇ ହୁଏନାହିଁ
ଅତଏବ ମତେ
କେବେହେଲେ କହିବାକୁ ହବ ।
କେବେ କହିବାକୁ ହବ ?
କେବେ ପୁଣି କାହାକୁ ? କାହାକୁ ? ?

# ଅଗଷ୍ଟ ପନ୍ଦର : ଲାଲକିଲା ଓ ଧଉଳି

**ସଦାଶିବ ଦାଶ**

ଅଗଷ୍ଟ ପନ୍ଦର ସକାଳୁ
'ଲାଲକିଲା' ସୂର୍ଯ୍ୟଭଳି ଉଜ୍ଜ୍ୱଳ ହୋଇଉଠେ ।
ଜୀବନ୍ତ ଭାରତର ହୃତପିଣ୍ଡ ପରି
ଅଳିନ୍ଦ ନିଳୟ ତା'ର ଆପେ ଆପେ ଖୋଲିଯାଏ ।
ସ୍ୱାଧୀନ ରକ୍ତରେ ସଞ୍ଚାରିତ ହୁଏ ତା'ର ଲାଲଦେହ
ଆବାହନର ନିଷ୍ଠୁର ରୋମାଞ୍ଚରେ ।

ଯମୁନାର ରକ୍ତମିଶା ଗୋଳିଆ ପାଣିରେ
ଗାଧୋଇ ପଡ଼େ ଲଙ୍ଗଳା ସମୟ ।
ଧର୍ମାନ୍ଧତାର ନିଷ୍ଠୁର ଲାଲ ମସନନ୍ଦ ଉପରକୁ
'ବାଦଶାହା' ଓହ୍ଲାଇ ଆସନ୍ତି ତ୍ରାଣକର୍ତ୍ତା ପରି
କୁହନ୍ତି 'ତୁମ ରକ୍ତର ଆଳତିରେ ସମୃଦ୍ଧ ଭାରତବର୍ଷ'
ତୁମେ ତା'ର ଅହଂଭରା ଶେଷ ଦୀପଶିଖା ।
କ୍ଷଣକରେ ବାଦଶାହାଙ୍କର ସ୍ୱର
ବ୍ୟାପିଯାଏ ଖଣ୍ଡ ମଣ୍ଡଳରେ ।
ତୁମଠାରୁ ଆମ ଗାଁ ଧଉଳି ପାହାଡ଼ଯାଏ
ଗଣତନ୍ତ୍ର ଜୟକାର କରେ ।

ସକାଳ କଇଁଛପରି ପଡ଼ିରହେ ସନ୍ୟାସୀ ପାହାଡ଼ଟିଏ
ଧବଳ ସ୍ତୂପର ଘଣ୍ଟା ନିଦରୁ ଉଠାଏ ।
କୁହେ ହେ ଦୁରନ୍ତ ବାଦଶାହା,
ତୁମେ ଥରେ ଓହ୍ଲାଇପଡ଼ ପାଚେରୀ ଉପରୁ ।
ତୁମର କଳଙ୍କିତ ମୁଖ ଆସି ପ୍ରକ୍ଷାଳନ କର
'ଦୟା'ର ଜଳରେ ।

ଭୟାଳୁ ବାଦଶାହାମାନେ
ଓହ୍ଲାଇପାରନ୍ତି ନାହିଁ ତୁମ ପାଚେରୀରୁ ;
ପାହାଡ଼ ଆଖିରେ ଲୁହ
ତା' ତଳର ମାଟିରେ ଅଜସ୍ର ଦୁଃଖ ।
ଶୋଷଣ ଓ ଯନ୍ତ୍ରଣାରେ ବିତିଥିବା

ସ୍ୱାଧୀନ ବର୍ଷମାନ।
ପେଟେ ତାର ଦୁର୍ବିସହ ଭୋକ
ବାଦଶାହା ଓ ମଣିଷଙ୍କ ମଧ୍ୟେ
ଲାଲକିଲା ଧଉଳିର ବିରାଟ ଦୂରତ୍ୱ।
ବାଦଶାହା ନିଜେ ଆଜି ଶୋଷକର ଲାଲକିଲା।
ସମଗ୍ର ଭାରତ ଆଜି ଶୋଷିତର ଧଉଳି ପର୍ବତ।

# ଚଣ୍ଡାଳ

ଆଶୁତୋଷ ପରିଡା

ଭିତରକୁ ଶୋଷି ନେଇଛି
ଜଳ ଓ ଅନ୍ଧାର,
ଉଡ଼ି ଯାଉଥିବା ବାଲି ମାଡ଼ିଯିବା ପରେ —
ନିର୍ଜନତା ଯାଏ,
ପଥର ମିଶିଯାଇଛି ହାଡ଼ରେ
ଚମରେ ଭେଦି ଯାଇଛି କଣ୍ଟା
କଣ୍ଟାର ଗଛ ସବୁ
କଅଁଳି ଉଠିବା ପରେ ଦେହରେ ।

ଆମ୍ଭର ଅଞ୍ଚଳକୁ ମାଡ଼ିଯାଇଛି ଅରଣ୍ୟ
ଯାହା ଭିତରକୁ ପଶି ଯାଉ ଯାଉ
ପବନ ଘୂର୍ଣ୍ଣି ଖାଉଛି,
ଛିଡ଼ି ପଡ଼ୁଛି ସବୁ କ୍ଷୁଧିତ ମହୁଫେଣା,
ଭିତରେ ଭିତରେ ଗର୍ଜନ ଶୁଭୁଛି
ଭୟାନକ ବଣ ଜନ୍ତୁଙ୍କର,
ଭିତରେ ଭିତରେ ଜଳିଉଠୁଛି ଅନଳ ।

ମୁଁ ଗଛ ଓ ଗହ୍ୱର ହୋଇ
ଉପରେ ଓ ତଳେ
ଉଭା ହୋଇଛି ଯୁଗପତ୍,
ଯେତେବେଳେ
ପ୍ରପାତ ଭଳି ଖସି ପଡ଼ୁଛି ଆର୍ତ୍ତନାଦ
ମୁଁ ଖୋଳି ହୋଇଯାଉଛି ତଳକୁ ତଳକୁ
ପୁଣି, ସବୁ ସୁଡ଼ଙ୍ଗ ଓ ସାପଗାତ ଭିତରୁ
ବଢ଼ାଇ ରଖୁଛି ତାଳର ହାତକୁ ।

ମୁଣ୍ଡାଇ ଧରିଛି ଖରା ଆଉ ରାତି,
ମୁଣ୍ଡାଇ ଧରିଛି
ଶୁଖି ଯାଇଥିବା ଛଣ ପରି ମେଘ,
ମୁଣ୍ଡାଇ ଧରିଛି ସାରା ଆକାଶର ଅଭିଶାପ ।

ମୋର ଯଦି ମୂର୍ତ୍ତିଏ ଅଛି
ଅରଣ୍ୟ ଭଳି ଭୟଙ୍କର,
ମୋର ଯଦି ଶୋଷ ଅଛି
ଯାହା ଉଠି ଆସିଛି ବିବର ଭିତରୁ,
ମୋ ପାଖରେ ଯାହା ଅଛି
ଶବ୍ଦାୟିତ କଣ୍ଟା ଓ ଅନ୍ଧାର,
ମୋର ପୁଣି ସ୍ୱପ୍ନ ଅଛି
କଣ୍ଟା ଭଳି ତୀକ୍ଷ୍ଣ ଓ ନିଷ୍ଠୁର ।

# ସ୍ଫୁଲିଙ୍ଗ

ପ୍ରସନ୍ନ ପାଟଶାଣୀ

ଗଛର ସ୍ଫୁଲିଙ୍ଗ କେଉଁ
ନୀଳ ଆକାଶକୁ ହାତଠାରି ଡାକେ
ଶୂନ୍ୟତାକୁ ଅଣ୍ଡିରେ ପୂରେଇ
ସବୁଜ ମମତାକୁ ବାଣ୍ଟେ ।

ପକ୍ଷୀମାନେ ଆସନ୍ତି ତା'ର ଡାକରାରେ
ଖେଳନ୍ତି ଡାଳରେ
ପବନରେ ମାଢ଼ି ଝରିପଡ଼େ ପତ୍ର
ନା ପକ୍ଷୀ ଜାଣେ, ନା ଗଛ ।

ଜୀବନର ସ୍ଫୁଲିଙ୍ଗ- ସଂଗ୍ରାମ ମୃତ୍ୟୁକୁ ଡରେନା
ଜନ୍ମ ଓ ମୃତ୍ୟୁର ବ୍ୟବଧାନରେ
ଜୀବନର ଅଗଣାରେ ନୀରବତା ଚକାପାରି ବସେ ।

ସମସ୍ତ ସମ୍ପର୍କର ସ୍ଫୁଲିଙ୍ଗରେ
ବିଚ୍ଛେଦର ଜୁଇ ଜଳିପାରେ ଇତିହାସର ମଶାଣିରେ
ଭଲ କର୍ମର କାଠ-କର୍ତ୍ତବ୍ୟର ଅଙ୍ଗାରରେ
ଯୌବନକୁ ଦେଖେ ।

ସ୍ଫୁଲିଙ୍ଗ ଆକାଶର ନିଜସ୍ୱ ଚେହେରା
ଯେଉଁଠି ସୂର୍ଯ୍ୟ ମୁହଁ ଦେଖୁ ଦେଖୁ ସଞ୍ଜ ଆସେ ।
ନିଶୀଥର ମଶାଣିରେ
ନିର୍ଜ୍ଜନତାର ଶବ ଦାହକରି
ସ୍ଫୁଲିଙ୍ଗ ପୁଣି ଜନ୍ମନିଏ ମୃତ୍ୟୁର ଉହ୍ଲେଇରେ ।

# ସ୍ୱର୍ଗ ନର୍କ ଓ ମଲ୍ଲିକା

ଦେବଦାସ ଛୋଟରାୟ

ମଲ୍ଲିକା, ତୋ ଲାଗି ଗଲି ବାରମ୍ବାର ସ୍ୱର୍ଗକୁ ନର୍କକୁ
ନା ପାରିଲି ମନ କିଣି ତୋ'ର, ନା ପାରିଲି ଦେହ ଛିଣି ତୋର।
ମଲ୍ଲିକା ସ୍ୱର୍ଗରେ ବଡ଼ କଷ୍ଟ ହୁଏ; ଉଦାସୀନ ସୌଧମାଳା
ଅମ୍ଳଜାନ ବିହୀନ ପବନ, ରାସ୍ତାର ଦି'କଡ଼େ ନମ୍ର ଧଳା ସାପ
ଅତ୍ୟନ୍ତ ଦୁର୍ମୂଲ୍ୟ ବେଶ୍ୟା, ଅନୁତାପହୀନ ସ୍ୱରମାଳା
ସୁବର୍ଣ୍ଣ କଠଉ ପିନ୍ଧି ନିର୍ଜନରେ କାନ୍ଦନ୍ତି ଈଶ୍ୱର।

ମଲ୍ଲିକାରେ, ନର୍କ ବଡ଼ ମନୋହର, ତୋ' ଆଖିର ଅଶ୍ରୁପରି
ଝଲମଲ ନିରୀହ ନଗର, ସ୍ଥାନେ ସ୍ଥାନେ ରବର ଓ ଟ୍ରକ୍
ପୋଡ଼ିବାର ଗନ୍ଧ, ରକ୍ତ ଓ ପାପର ବାସ୍ନା
କି ସୁରମ୍ୟ ଆବର୍ଜନା : ଦୁଃଖ ପରି ନିରାପଦ ବନ୍ଦୀଶାଳା
ଶ୍ୟାମଳ ଗଣିକା ଦଳ, କୁକୁର ଓ ପରିବା ତୋପାରେ ଭର୍ତ୍ତି
ରାସ୍ତାଘାଟ ଓ ଅନେକ ପରିଚିତ ଲୋକ।

ମଲ୍ଲିକା, ତୁ ପରା ଦିନେ ରାଜିଥିଲୁ ମୋ ସାଥୀରେ
ଯିବାକୁ ନର୍କକୁ : ଯେ ଆଲୋକେ କୌମାର୍ଯ୍ୟ ଲୁଣ୍ଠିତହୁଏ
ସେ ଆଲୋକ ଜଳୁଥିଲା ଘର ସାରା, ମୁଁ କହିଲି
ଉଠ୍, ଚାଲ ଯିବା ନର୍କକୁ, ମୁଁ ରିକ୍ସା ଡାକି ଆଣୁ ଆଣୁ
ତୁ ପିନ୍ଧି ନେ ଲୁଗାପଟା ଓ ମୁଁ ଗଲି ବଜାରକୁ
ଫେରିଲା ବେଳକୁ ସବୁ ଅନ୍ଧକାର ଭରି ଏକ ପରାହତ ଆଶା
ଓ ମୋର ହୃତ୍‌ପିଣ୍ଡ ସାରା ଭର୍ତ୍ତି ଲାଲ ପୋକ
ହଁ, ଆଉ ଆସନ୍ତା କିଏ, ପ୍ରବଞ୍ଚକ ପବନ ବ୍ୟତୀତ।

ମଲ୍ଲିକା, ତୋ' ଲାଗି ଗଲି ଉଦାସୀନ ସ୍ୱର୍ଗକୁ ଯେଉଁଠି
ଧବଳ ପତାକା ଉଡ଼େ ନିଷ୍ଫଳ ଆଲୋକେ
ମଲ୍ଲିକା, ତୋ' ଲାଗି ଗଲି ନର୍କକୁ ଯେଉଁଠି
ସନ୍ତପ୍ତ ପ୍ରତିଜ୍ଞା ଜଳେ ରାଜଧାନୀ ରାସ୍ତା ଦୁଇପାଖେ
ତୁ ନ ଥିଲୁ କେଉଁଠାରେ ତୁ ଛୁଡ଼ିଲୁ ବଚନ ତୋହର
ନା କେବେ ହୃଦୟ ଦେଲୁ ନା କଦବା ଅର୍ପିଲୁ ଶରୀର।

# ନିଶବ୍ଦ ନିଃଶ୍ୱାସ

ନୀଳାଦ୍ରି ଭୂଷଣ ହରିଚନ୍ଦନ

ବଳଦର ପଥର ଆଖି ଦି'ଟାର
ଚାହାଁଣୀ ଭିତରେ
ହଠାତ୍ ଶେଷ ହୋଇଯାଏ ପୃଥିବୀର ତାଜା ଆୟୁଷ।

ସୁନ୍ଦରୀ ବାଳିକାର ପ୍ରେମପରି ଓଦାବାଲି
ଶୁଖିଯାଏ ଡହ ଡହ ଖରାରେ
ଝକ ଝକ ଦିଶୁଥିବା ବିନ୍ଦୁସବୁ
କିଛି ନୁହେଁ, ମରୁଭୂମିର ଅବଶୋଷ।

ଚିତ୍କାର କରି ଉଠନ୍ତି ବୃଦ୍ଧଦେବ
ଆତଙ୍କରେ
ଜହ୍ଲାଦ ସ୍ଥବିରମାନଙ୍କ ହାତର ଛାଇରେ
ଭାଙ୍ଗିପଡ଼େ ମୁହଁ ଖୋଲି କହି ଦେବାର
ସକଳ ସାହସ।

ପ୍ରେମକ'ଣ ଘୃଣା କ'ଣ
ଏଇତକ ବୁଝିବାକୁ ବିତିଗଲା
ଏତେଗୁଡ଼ାଏ ବୟସ
କେତେ ସହଜରେ ଶୁଖିଲା ଘାସମୂଳକୁ
ଉଡ଼ାଇ ନେଇଯାଏ
ବିଷଣ୍ଣତାର ପାଗଳ ଅଟ୍ଟହାସ।

ମୃତ୍ୟୁକୁ ଫାଙ୍କିଦେବାର ଉପାୟ ନାହିଁ ଆଉ
ପଉଷର ଗଛଟିରୁ ପତ୍ରଝଡ଼େ
ଗୋଟିଏ ପରେ ଗୋଟିଏ
ନିଶବ୍ଦ ନିଃଶ୍ୱାସ।

# ଅପର ଈଶ୍ୱର

ଗିରିବାଳା ମହାନ୍ତି

ବଞ୍ଚିବାର କଳାକୁ କି ଚମତ୍କାର ଭାବରେ
ଆୟତ୍ତ କରିଛି;
ଅବାକ୍ ସୌଜନ୍ୟ ଭୂଷିତ କି ସୁନ୍ଦର
କୁଶଳ ଜିଜ୍ଞାସା କରିପାର;
ମାପିଚୁପି ହସ;
ଭଦ୍ର ପରିହାସ ମଉଜ୍ଜୁଅ, କି ଚମତ୍କାର !
କି ନିପୁଣ ଭାବରେ ଅଧସ୍ତନଙ୍କୁ ବୁଝିବାର
ଅବସର ଦିଅ- ତା'ର ସ୍ଥାନ କେଉଁଠି,
ବଶୀଭୂତକରେ ଉପରସ୍ଥିତଙ୍କୁ;
କି ଉଲ୍ଲାସରେ ବୈରୀର ଭାଗ୍ୟକୁ
ଭାଙ୍ଗ ଯୋଡ଼:
ସାମାଜିକତାର କଳା କି ନିପୁଣ ଭାବରେ
ଆୟତ୍ତ କରିଛ ସତେ,
ମୁହାଁମୁହିଁ ପରମମିତ୍ରତାର ପ୍ରମାଦରେ ପଡ଼ିବ
ଚରମ ଶତ୍ରୁ;
ଆତ୍ମହତ୍ୟାର ଉପାୟ ଚିନ୍ତୁଥିବା ପରାଜିତ ସାମ୍ନାରେ ବୁଝାଣି।

'କିଛି ଅଘଟଣ ଘଟିନାହିଁ' ଠାଣିରେ
ବଳିକୁ ପାତାଳକୁ ଚାପୁଥିବା ବାମନ
ଅନାୟାସରେ ସ୍ମିତ ଉକୁଟାଅ,
କି ଦୁର୍ଲଭ ସ୍ଥିରରହ ସତେ
ପରାସ୍ତ ପ୍ରେମିକା ବି ଦେଖି ଅଭିଶାପ ଭୁଲି
ବରଦା ପାଲଟି ଯିବ:
ଭିତରର ସବୁ ସାଧାରଣତ୍ୱକୁ ଖର୍ଚ୍ଚ କରିଦେଇ
ତୁମେ କେବେ ଠାରୁ
ଦେବତା ପାଲଟିଛ ?

# ଅବତାର

ମମତା ଦାଶ

ଏ ଅବେଳ ବସନ୍ତର ଦୋଷ କ'ଣ ? ମୁଁ ତ ନିଜେ ତାକୁ ଡାକି ଆଣିଥିଲି
କେବଳ ତମରି ପାଇଁ
ନହେଲେ ସେ ଆସିଥା'ନ୍ତା ?
ଅତୀତରେ ସେତ କେବେ ମୋ ମାଟିର ସୀମା ମାଡ଼ିନାହିଁ।

କେବଳ ତମରି ପାଇଁ
ସେ ମୋ ଦଗ୍ଧ କଳ୍ପନାର ମଶାଣି ଚାରିପାଖରେ
ବେଢ଼ି ରହିବାକୁ ମଳୟକୁ ଆଜ୍ଞା ଦେଲା,
ମୁହୁର୍ମୁହୁ କୋଇଲି ସ୍ୱରକୁ ବସାଇଲା
ମୋ ହାଡ଼ଙ୍କ ଦ୍ୱାରରେ ଦ୍ୱାରରେ,
ନାଲି ନାଲି ଆମ୍ରପତ୍ର ଉହାଡ଼ରୁ ଟାଣିଆଣି ବଉଳ ପେନ୍ଥାକୁ
ଅନୁପମ ପ୍ରତିଶ୍ରୁତି ସବୁ ଖଞ୍ଜି ଦେଲା ସେମାନଙ୍କ ସଲ୍ଲଜ ଆଶାରେ।

ମୋ ପ୍ରାଣର ବିସ୍ତୃତ ମରୁଭୂମିକୁ
ରଙ୍ଗ ଫୁଆରାରେ ଭିଜାଇଲା,
ତା' କାଳର ଗୋଟି ଗୋଟି ପ୍ରତି ମୁହୂର୍ତ୍ତକୁ
କହିଲା ଯେ, ସର୍ବୋତ୍ତମ ସ୍ୱପ୍ନ ଆଉ କୁହୁକ ଖେଳରେ
ଭରିଦିଅ ଏ ରାଜ୍ୟର ଆଦ୍ୟରୁ, ପ୍ରାନ୍ତକୁ।

ସେ ପୁଣି ସଜାଇ ମୋତେ
ଫୁଲ ବେଦୀକାରେ ବସାଇଲା,
ମୋ ସ୍ପର୍ଶରେ ପୂର୍ଣ୍ଣ କଲା ଭିନ୍ନ ସମ୍ମୋହନ,
ସେ ମୋତେ ପିନ୍ଧାଇ ଦେଲା ଫୁଲର ମୁକୁଟ,
ଫୁଲ ଆଲୁଅରେ ଚକ୍‌ଚକ୍ କରିଦେଲା
ଲତାକୁଞ୍ଜ ଘେରାଯେତେ ସ୍ୱାଗତ ତୋରଣ।

ତା' ପରିକଳ୍ପନାରେ ଥିବା
ବହୁ ପୂର୍ଣ୍ଣିମାଙ୍କ ସମାବେଶ ପ୍ରଥମ ରାତିଟି
ଆସିବା ଆଗରୁ କିନ୍ତୁ ତମେ ପହଞ୍ଚିଲ,
ତମ ପାଦର ଶବ୍ଦରେ
ବ୍ୟାପ୍ତ ସବୁଜିମା ଗାଉଥିବା ସଙ୍ଗୀତକୁ

ସଙ୍ଗେ ସଙ୍ଗେ ସ୍ତବ୍ଧ କରିଦେଲ,
କି ପବିତ୍ର ତୀବ୍ର ଚାହାଣୀ ତମର।
ଲିଭାଇଲା ମୋ ଭିତରେ ସୃଷ୍ଟି ହୋଇ ଆସୁଥିବା
କଲରୋଳ- କାମନାର, ଲୋଭର, ପ୍ରେମର,
ପୋଡ଼ିଦେଲା ବସନ୍ତର ଉତ୍ତେଜନା, ଅହଂକାର,
ଅବଶିଷ୍ଟ ସବୁ ସମ୍ଭାବନା ତା'ର ଏ ଜନ୍ମର, ଅନେକ ଜନ୍ମର।

ମୁଁ କିମିତି ଜାଣିଥା'ନ୍ତି ଏସବୁ ବୁଝନି ତମେ,
ଏ ସବୁରେ ପସନ୍ଦ ନାହିଁ ତମର ?
ଜାଣିଥିଲେ ମଧ୍ୟ ଆଉ କିଛି
ଉପାୟ ଥିଲା କି ମୋର ?
ତମ ଯୋଗ୍ୟ ସମ୍ବର୍ଦ୍ଧନା ପାଇଁ
ମୁଁ ତ ପୃଥିବୀରୁ ଆଣିଥିଲି
ଶ୍ରେଷ୍ଠ ଆଡମ୍ବର ତାର, ବହୁମୂଲ୍ୟ ଶ୍ରେଷ୍ଠ ସମୟର।

# ନିଜ ନଈ : ପ୍ରବାସୀ ନାଉରୀ

ଅମରେଶ ପଟ୍ଟନାୟକ

ସରି ସରି ଆସୁଥାଏ ବର୍ଷା
ଦୃଶ୍ୟ କୁହୁଡ଼ି ସାଗର
ଦୃଶ୍ୟ : ପାହାଡ଼ ମଥାନ.... ।
କିଏ ଖୋଜେ କାରଣ ଥିଲାବେଳେ
ଖୋଜି ଖୋଜି ମଥାନ ଅଥବା ଅଥାନ
ଖୋଜା ଖୋଜି ପଖୌଜ ବାଜୁଥିଲା ଯାଏ..... ।
ଥରଥର ଡଙ୍ଗା ଝାଇଁ ଝାଇଁ ଝିଙ୍କାରୀ
ଝଙ୍କାଳିଆ ଡାଳ । ଘଞ୍ଚ ଉହାଡ଼ରୁ
ସିନ୍ଦୂରାୟିତ ଝଲମଲ
ମଳୟିତ ଲହରୀ.... ।
ଲହ ଲହ ଜିଭ । ଅଠା ଅଠା ଓଠ ।
ଡାକେ ଡାକୁଥାଏ
            ଜଡ଼କୁ କରିବାକୁ ଜୀବନ୍ତ
ଜଳେ ଜଳୁଥାଏ
                ଜଡ଼ତା ଅନ୍ତର୍ନିହିତ
                ମୁହୂର୍ତ୍ତ କେବଳ ଏକାନ୍ତ ।
ଡୁବେ ଡୁବୁଥାଏ କାତଚିତ ଲୀନ ହୋଇ
ଯିବାର ପର୍ଯ୍ୟନ୍ତ :
ମଥା ନ ଥାଏ, ଥାଏ କେବଳ ବ୍ୟଥା
ମଥାନ ନ ଥାଏ ଥାଏ କେବଳ ସିଠା
ଡଙ୍ଗା ନ ଥାଏ, କାତ ନ ଥାଏ, ମେଘ ନ ଥାଏ,
ପାଣି ପାଣି ଚିତ୍କାର ଆତୁର
ଭୂଇଁ ଫାଟୁଥାଏ : ପଦ୍ମ ଫୁଟୁଥାଏ, ହଂସ ଚାହିଁଥାଏ ।
ଅଥଚ —
ସରି ସରି ଆସୁଥାଏ ଆୟୁଷ :
            ବୟସର ବୟସ ।

# ବିଷାଦର ନଈକୂଳେ

ମନୋରମା ବିଶ୍ୱାଳ ମହାପାତ୍ର

କବିତାରେ ବଞ୍ଚିବାଯେ
କେତେ କଷ୍ଟକର
ଜାଣ ନାହିଁ
କବିର ବିନ୍ଦୁଏ ଲୁହର ପୃଥିବୀରେ
ଭୂମିକମ୍ପ ହେଉଥାଏ ବାରମ୍ବାର
ଥରିଯାଏ ଅସହାୟ କବିର ଜୀବନ।

ଆଞ୍ଜୁଳା ଆଞ୍ଜୁଳା ଲୁହ
ବତୁରାଇ ଦିଏ ଜୀବନକୁ
କବିର ମନକୁ
ସାମଗ୍ରିକ ଜୀବନର ହସ୍ତାକ୍ଷର
ପଢ଼ିବାକୁ କଷ୍ଟ ହୁଏ
ବନ୍ଧ୍ୟା ଜୀବନର ବିଫଳତା
ଛାଇଯାଏ କବିର ପୃଥିବୀ।
ବିଷାଦର ନଈକୂଳେ
ଏକା ଏକା ବଞ୍ଚିବା ଯେ ଭାଗ୍ୟତାର
ସାରା ରାତି ଅନିଦ୍ରାରେ
ଉତ୍କଣ୍ଠାରେ ବିତାଇବା ଭାଗ୍ୟତାର
ସ୍ୱପ୍ନ ଦେଖା ମଣିଷଟି
ଦୁଃଖର ପଥର ତଳେ ଚାପିଯାଏ
ସାରା କ୍ଷଣ ସନ୍ତୁଳି ହେଉଥାଏ
ବିଷର ଜ୍ୱାଳାରେ।
ଜ୍ୱାଳାମୟ ଜୀବନର ଭାର ବୋହି ବୋହି
କବିତାରେ ବଞ୍ଚିହୁଏ ନାହିଁ।
ତାର ଏକଲା ପଣରେ
କ୍ରୁଶବିଦ୍ଧ ହେଉଥାଏ
ତାର ଉଦାସୀନତାରେ
ଘାରି ହୋଇଯାଉଥାଏ
ବିନ୍ଦୁଏ ଲୁହରେ ଢଳ ଢଳ କବିର ଜୀବନ।

ଟିକିଏ ସ୍ନେହରେ;
ସମଗ୍ର ସତ୍ତାରେ ତା'ର
ଛାଇଯାଏ ସୁକୁମାର ପଣ
ତା'ର ଦୀର୍ଘ ନିଃଶ୍ୱାସରେ ଆକାଶର ଛାତି
କ୍ରମଶଃ ନେଳିଆ ହୁଏ
ବସିରହେ ଏକୁଟିଆ
ବିଷାଦର କ୍ଷୀଣ ନଈଧାରେ ।

# ସମୁଦ୍ର ଓ ଚିତ୍ରକର

ସୌଭାଗ୍ୟବନ୍ତ ମହାରଣା

ଅଂଧାର ମାଡ଼ି ଆସିବା ଆଗରୁ
ସମୁଦ୍ର କୂଳରେ ଏକା ଏକା ବୁଲୁଥିବା
ଆବୁରୁଜାବୁରୁ ଜୀବନକୁ ଚିହ୍ନିଚକି ?
ଘରଚଟିଆ ହିଁ ବେଶ ଭଲ ଜାଣେ
ସୂର୍ଯ୍ୟାସ୍ତର ଶେଷ ଦୃଶ୍ୟରେ
ଅକସ୍ମାତ ନାୟକ ପାଲଟିଯିବାର ମୋହ।
ସମୁଦ୍ରର ଶୋଷରେ ଶୋଷରେ
ଉବୁଟୁବୁ ହେବାକୁ ରାତିସାରା
ଶିହରିତ ହୋଇଯାଏ
ଶାମୁକାର ଆଇଁଷିଆ ସ୍ୱପ୍ନ
ଜୀବନର ନକ୍ସା ଆଂକୁ ଆଂକୁ
ନିର୍ଜନ ବାଲି ଶେଯରେ
ଚିତ୍ରକର ସୂର୍ଯ୍ୟାସ୍ତ ଆଡ଼କୁ ମୁହାଁଇ
ଭାବବିହ୍ୱଳ ହୋଇଯାଏ ଅଚାନକ।
କେଜାଣି ନିଃସଂଗ ଶାମୁକାଟେ
ନିଖୋଜ ନାବିକର ସଂଧାନ କରିବାକୁ
ଚିତ୍ରକରର ନକ୍ସା ଭିତରେ
ନିଜକୁ ହଜେଇ ଦିଏ ଛଟପଟ ହୋଇ।
ଆଖିପିଛୁଳାକେ ସମୁଦ୍ରଟା କୂଳ ଲଂଘିଯାଏ।
ପ୍ରଳୟର ପାର୍ବଣରେ
ମହାସଂଗୀତ ଗାଇ ଗାଇ ନାଚିବାକୁ।

# ସକାଳ ନ ପାହୁଣୁ

ଶୁଭେନ୍ଦୁ ମୁଣ୍ଡ

ସକାଳ ନ ପାହୁଣୁ ପୁଣି ରାତି ହୋଇଯାଏ,
କାଉ କା' ନ କରୁଣୁ କାଦୁଅରେ ବୁଡ଼ିଯାଏ ଗୋଡ଼
ସଂଧ୍ୟାରୁ ସକାଳଯାକେ
ଚୁପ୍‌ଚାପ୍ କୋଠରୀରେ
ଶୁନ୍‌ଶାନ୍ ଅଂଧାରରେ... ...

ସକାଳ ପାହୁ ନ ପାହୁଣୁ ପ୍ରଜାପତି ବଗିଚାରେ
ଅଣ୍ଡା ବିଛଣା ଉପରୁ ଯେମିତି
ସକାଳର ଚଢ଼େଇ ସହିତ ଦେହ ମୋର
ଫୁର୍‌ଗ୍‌କିନା ଉଡ଼ିଯିବ ଅନେକ ଦୂରକୁ
ବଗିଚାର ବୁଢ଼ା ନିମଗଛର ଫୁଲ ସହିତ ହସି ହସି
ପବନରେ ଅନେକ ଦୂରକୁ।

ପଥର ପରି ଦେହର ଗୋଡ଼ରୁ ଚେର ମାଡ଼ିଯାଏ ସିମେଣ୍ଟ ଚଟାଣ ସାରା
ହାତ ଦୁଇଟି ଲାଖିଯାଏ କାନ୍ଥଛବି ଭଳି।

ତୁମେ ବାହାରେ ଛିଡ଼ାହୋଇ ଡାକୁଚ ଯେ ଡାକୁଚ
ତୁମ ଇଂଗିତରେ ଦେଖ ମୋ ଆଂଗୁଠି ଗୁଡ଼ିକ
କେମିତି ଲମ୍ବିଯାଏ ଲଟେଇଯାଏ
ଝରକା ରେଲିଂରେ :

ତୁମ ଆଡ଼ିକି ଚାହିଁ ରହିଥିବା ବେଳେ ହିଁ
ରାତିର ଅଂଧାର ହଠାତ୍ ଝାପ୍‌ସା କରିଦିଏ
ତୁମ ମୁହଁ। ଅଂଧାର ଶୁନ୍‌ଶାନ୍ କୋଠରୀରେ ମୁଁ
ପୁଣି ଅଦୃଶ୍ୟ ହୋଇଯାଏ ଛାଇଟିଏ ଭଳି,

# କଟକରେ ଖରାଦିନିଆ ବର୍ଷା

ଭଗବାନ ଜୟସିଂହ

କଟକରେ ଖରାଦିନ ଅପରାହ୍ଣ :
ରାସ୍ତାକଡ଼ ନିଶୂନ ଗଛରେ
ପିଟିହୁଏ ପଶ୍ଚିମର ନିରଂଗ ପବନ
ନହନହକା ଡାଳସବୁ ନଇଁ ନଇଁ
ଚୁମିଯାନ୍ତି ଟାଂଗର ଭୂଇଁକୁ
ଅସ୍ରାଏ ବର୍ଷା ହେବାର ସଂକେତରେ
ପୋଷା ମୟୂର ଚାହିଁରହେ ଆକାଶକୁ ।

ସହରର ପ୍ରତ୍ୟେକ ରାସ୍ତାରେ
ଛବିଳ ମେଘର ହାଓ୍ଵା :
କାଚଝର୍କାରେ ଅଳଂଧୁ ପରି ଘୋଟିଯାଏ
ସହର ଉପରେ ସଂଧ୍ୟା
ପକ୍ଷୀଂକର ଭୟାର୍ତ୍ତ ଫଡ଼ଫଡ଼ରେ
ମଂଦାକିନୀ ଉଠି ବସେ,
ଘରେ ସିଏ ନିଃସଂଗ, ଏକେଲା ।

କଟକରେ ମେଘ ଘୋଟେ
ବାଲିଝଡ଼ ଆଚ୍ଛନ୍ନ କରେ ଘୋଡ଼ାଘାଟ ପୋଲ
ଉଡ଼ନ୍ତା ଶୁଖିଲା ପତ୍ର ଭରିଦିଏ
ପୁରୀଘାଟ ମଂଦିର ଓ ମସ୍‌ଜିଦ୍
ପଚାପାଣିର ଗଂଧରେ ପ୍ରମତ୍ତ ହୁଏ ପଶ୍ଚିମା ପବନ
ସ୍କୁଲ ଫେରା ଝିଅଂକ ସ୍ତନରେ ଦିଶେ
ଆସନ୍ନ ବର୍ଷାର କ୍ଷତ ।

ଏକ ନିଶ୍ଚଳ ସ୍ଥିର ବିଂଦୁ ପରି
ଶୋଇଅଛି ସନାତନ—
ଶିଂଶୁପା ଗଛରେ ବାଜେ ଝଡ଼ର ମାଦଳ
ତାର ସଦ୍ୟଜାତ ପୁତ୍ରର ଜୀବନ ନାଚେ
ମୃଦଂଗ ତାଳରେ—
ଚଳିପଡ଼େ ଅଶ୍ୱାରୋହୀ

ଅଶ୍ବ କିନ୍ତୁ ଫେରିଯାଏ କ୍ଷଣେ ମାତ୍ର ରହି।
ଘଡ଼ଘଡ଼ିର ବାଣ ଫୁଟେ ସହର ସାରା
ଥରିଉଠେ ସହରର ଛାତି, ଅନୁପମା ପ୍ରୀତି ପରି
କିମ୍ୱା ଦୋହଲିଲା ଚଢ଼େଇବସାରୁ
କୁଟା ଖଣ୍ଡେ ଉଡ଼ିଗଲା ପରି
ଝଡ଼ ଝୁମେ ଅଂଧାରକୁ ଚୁମି ଚୁମି
ଉନ୍ମତ୍ତ ବର୍ଷାର ଛୁରି
ବିଦ୍ଧକରେ ଝଡ଼କ୍ଲାନ୍ତ କଟକ ନଗରୀ।

ବର୍ଷାର ତାଣ୍ଡବ ମୋ ଘର ସାମ୍ନାରେ
ବର୍ଷା ପିଟେ ସହରରେ, କାଠ ଦେହେ ହାତବାର୍ସି ପରି
କେତେ କେତେ ଝିଟିପିଟି ଓ ପିଂପୁଡ଼ିଂକୁ
ତ୍ରସ୍ତ ଓ ବିବସ୍ତ୍ର କରି
ଓଦାକରି ତଟସ୍ଥ ସାପଂକ କାତି
ଏବଂ ମୋର ଶୁଷ୍କ ଜୀବନରେ ଦୀର୍ଘତର କରି
କେଉଁ ଅତିକ୍ରାନ୍ତ ରାତିର ବିପତ୍ତି।

# ସ୍ପଷ୍ଟ କଥନ

ଅପର୍ଣ୍ଣା ମହାନ୍ତି

ସବୁବେଳେ
ଏତେ ଗୋଟେ ମାପଚୁପ କ'ଣ ?
ସୁନା ପରୁଆରେ ଥିବ
ବାରହାତି କେଶ .....।
ବାରହାତି ଓଢଣା ଭିତରୁ
ଫୁଟି ଫୁଟି ଦିଶୁଥିବ
ଜହ୍ନପରି ତୋରା ମୁହଁ
ଦୁଧ ଅଳତାର ଦେହ
ତିଳଫୁଲ ପରି ନାକ
ମାଛ ପରି ଆଖି
ଆଉ କ'ଣ କ'ଣ କେତେ
ବଡ଼ ଦୁଃଖ ହିସାବ ରଖିବା
ମାପୁ ମାପୁ ଗୋଟିଏ ନାରୀକୁ
ବ୍ରହ୍ମାଣ୍ଡର ସବୁତକ
ଗ୍ରହତାରା-ଗଛଲତା-ପଶୁପକ୍ଷୀ
ଫୁଲଫଳ ହୋଇଗଲେ ଶେଷ....।।

ସତେ କେତେ ଅନନ୍ୟା ମୁଁ
ତଥାପି ରହସ୍ୟମୟୀ ନାରୀ।
କାହିଁକି ମିଛ କହିବି
ମଝେ ମଝେ ଇଚ୍ଛା ହୁଏ
ଏ ମାପର ଘେରରୁ ଟିକେ
ମୁକୁଳି ଯାଆନ୍ତି
ମତେ ମାପୁଥିବା ଯେତେ
ବାମନମାନଙ୍କୁ
ଥରେ ନିରେଖି ଚାହାଁନ୍ତି
ବେଳ ଦେଖି
ହୁଏତ କେଇଟା କଥା ଦିଅନ୍ତି ପଚାରି
ପଚାରନ୍ତି

ତମେ ତ ମଣିଷ ଜଣେ
ମୁଁ ବି ମଣିଷ
ସୁଲକ୍ଷଣୀ ଜାଣିବାକୁ
ମୋ କେଶର, ମୋ ବାସର
ମୋ ଦେହର ଦୈର୍ଘ୍ୟ ପ୍ରସ୍ଥ
ଲିପିବଦ୍ଧ ହେଲା
କାହିଁ-କେଉଁଠି ତ ଲେଖାନାହିଁ
ମୃତଦାର ହେବନାହିଁ
କେବେ ଯିଏ.......
ଏମନ୍ତ ସେ ଶ୍ରୀମନ୍ତ ନରର
କେତେ ଲମ୍ବ ଦାଢ଼ି ହେବା କଥା
ଅବା କେତେ ଘନ ନିଶ ?

ମାଇପିଟା ମାଟିହାଣ୍ଡି
ଦେଖାଚାହାଁ ତା ପାଇଁ ସିନା
ପୁରୁଷ ପୁଅର ରୂପ —
ତା'ର ପାରିଲା ପଣିଆ
ଏ କଥା କହିଲା ଯିଏ
ସିଏ ମଣିଷ ହେଉ ନ ହେଉ
ଭାରି ସିଆଣିଆ......।
ଏକ ମୁଖେ —

ଅପବିତ୍ରା, ନର୍କ, ମାୟା, କାଳଭୁଜଂଗିନୀ
ଅନ୍ୟ ମୁଖେ —
ବରଣୀୟ-ସତୀ-ଦେବୀ-ରୂପସୀ-ପଦ୍ମିନୀ
ମୂଲ୍ୟହୀନ ଅତିରଂଜନରେ
ମାଠିମୁଠି ବାରମ୍ବାର
ଲେଖା ହେଲା ଧୀରେ ଧୀରେ
ମୋର ନିପାରିଲା ପଣିଆର
କମନୀୟ ରିକ୍ତ ଇତିହାସ
ଛାଣୁତନ
ଛାନୁ ମନ
କ୍ରମେ-ପ୍ରଶଂସା ଭାର ସହିଲା
ସାଜିହେଲା...ଶିହରିତ ହେଲା
ରୂପ-ଗୁଣ-ବଖାଣର
ଏଇ ଯେତେ ନିର୍ଲଜ ବିଳାସ

ମୋର ତ
ଭାବିବାର-କଥା କହିବାର
ସୀମାରେଖା ଟଣା ସରିଥିଲା
ପ୍ରତ୍ୟହ ସକାଳ ସଂଗେ
ସେ ସୀମାର ମର୍ଯ୍ୟାଦାକୁ
ପ୍ରଣାମ ଜଣାଇଁ
ମୁଁ ସ୍ୱୀକାର କରୁଥିଲି
ଏଇ ମୋର ବୈକୁଣ୍ଠ ଭୁବନ
ଏଠି ଅର୍ଦ୍ଧେକ ଈଶ୍ୱର
ଏବଂ
ଅନ୍ୟ ଅର୍ଦ୍ଧ ଆଶ୍ରିତ ଓ ଦାସ
ଆଶ୍ରିତଙ୍କ ଗହଣରେ
କନ୍ୟା ଥିଲେ, ବଧୂ ଥିଲେ
ଜନନୀ ବି ଥିଲେ
ନ ଥିଲେ କେବଳ ଯାହା
ଜଣେ ହେଲେ
ସତ୍ୟବାକ୍ ସଂପୂର୍ଣ୍ଣ ମଣିଷ ।।

# ଅବତରଣ

ଶ୍ରୀ ଅଶ୍ୱିନୀ କୁମାର ମିଶ୍ର

ସେତେବେଳେ ଝଡ଼ ଥିଲା
ଆକାଶର କୋଣରେ କୋଣରେ
ମୁଁ ଓହ୍ଲାଇ ଆସୁଥିଲି ବାଡ଼ି ଧରି
ବାରଂଡ଼ା ମଝିକୁ, ମୋ ଶକ୍ତି ବି ନିଭୁଥିଲା
ଆସ୍ତେ ଆସ୍ତେ ପ୍ରକୃତି ପ୍ରକୋପେ
ମୁଁ କିନ୍ତୁ ଓହ୍ଲାଉ ଥିଲି ବପୁ ରଖି
ଷାଠିଏ ଷଂଢ଼ର, ସେତେବେଳ ବର୍ଷା ଥିଲା,
ବଉଦର ଫାଂକରେ ଫାଂକରେ....
ବଜ୍ର ଓ ବିଜୁଳି କିନ୍ତୁ ସେଇବେଳେ
ତମାଳ ଶିଖରେ, ଉଲଂଗ ନୃତ୍ୟର ତାଳେ
ଛିଂଡ଼ି ଛାଂଡ଼ି ପଡୁଥିଲା ହାତ ଗୋଡ଼
ପତ୍ର ଓ ଡାଳଂକ, କଳରବ ଉଠୁଥିଲା ସେଇଲାଗେ
ବାସହୀନ ଚଢ଼େଇ ପଲଂକ
ଅଣାୟତ୍ତ ଝଡ଼ର ଶରରେ କପିଛାଡ଼
ଟଳିଟାଳି ପଡୁଥିଲେ ଜୀବଜଂତୁ
ସଜୀବ ବ୍ରହ୍ମାଂଡ଼,
ସେତେବେଳେ ଭୟ ଥିଲା
ହୃଦୟର କୋଣରେ କୋଣରେ
ସେ ନିଭୃତ ଆଶାଟିକ ମରି ହଜି
ଯାଉଥିଲା ଅରମା ଦିଗଂତେ
ଯୂଥ ଯୂଥ ପଶୁଯୁଦ୍ଧ ଦାନବୀୟ ପ୍ରମତ୍ତ ଲୀଳାରେ
ଦିଶୁଥିଲା ଟିକେ ଟିକେ କିଛି ଦୂରେ
ରେଖାଚିତ୍ର ଜଣକର, ଡାରଉଇନ୍
ନାଆଁଟି ତାହାର।

କେହି ଜଣେ ଖୁସିଥିଲା ସେଇବେଳେ
ଲୋମଶ ଦେହକୁ ଥୋଇ
ପାରାଚ୍ୟୁଟ୍ ନିବୁଜ ଗଦିରେ
ପାସ୍‌ପୋର୍ଟ ଘିନିଥିଲା ପକେଟରେ

ଅଦୃଶ୍ୟ କାଗଜେ
ବୋବାଳିବି ସୁରୁହେଲା ସଜୀବ ରାଇଜେ
କେଜାଣି ବି ହୋଇପାରେ
ତାଙ୍କାରି ପ୍ରକୋପେ ।

# ଆଉ ଦିନେ ତମ କଥା ଲେଖିବି

**ହରପ୍ରସାଦ ପରିଚ୍ଛା ପଟ୍ଟନାୟକ**

ଦେଖ, ମୁଁ ଜାଣିନି ତମେ ଏପରି ପହଞ୍ଚି ଯିବ
ଅପରିଚିତ ଦୁଃଖ ପରି ଦିନ ସାତଟାରେ ।

ଚକର କାଟିଲାଣି ଖରା ଆକାଶରେ,
ଦେହ ସାରା ଝାଳ ମୋର, ପାଦ ଓ କପାଳରେ
ବହୁ ଅର୍ଥର ଧୂଳି, ଆଖିରେ ପ୍ରତିବିମ୍ବିତ
ଗତ ରାତିର ଭୟଙ୍କର ସ୍ୱପ୍ନ, ଓଠରେ ଫୁଟୁଥିବା ହସ
ମନବନରେ ଝଡ଼ ବିଧ୍ୱସ୍ତ କ୍ଳାନ୍ତ ପୃଥିବୀର କଥା ।

ତମେ କହିଥିଲ ସେଦିନ ଆସିବ
ଯେଉଁଦିନ ତମ ମସ୍ତକରେ ଲକ୍ଷାଧିକ ତାରାଙ୍କ ଆଲୁଅ
ବାକି ଯେତେ ପୃଥିବୀକୁ ଆଲୋକିତ କରୁଥିବ,
ଯେଉଁଦିନ ତମର ହସରେ ପବନ ଡରିଯାଇ
ଲୁଚିଯିବ ଅନ୍ତରୀକ୍ଷ ଆରପାରେ,
ଯେଉଁଦିନ ତମର ଇଙ୍ଗିତରେ ରାତି ହେବ ଦିନ
କୋଟି କୋଟି ଲୋକଙ୍କର ନିଦ ଭାଙ୍ଗିଯିବ ସୂର୍ଯ୍ୟ ଆଲୁଅରେ,
ଯେଉଁଦିନ ହଜାରେ ଦୁଃଖକୁ ଆମେ ହଜାଇବା
ହଜାରେ ପଲକରେ ଓ ଆମେ ହସି ହସି ଦେଖୁଥିବୁ
ତମକୁ ତମର କ୍ଷଣିକ ରୂପାନ୍ତରରେ ।

କାଲିପରି ଲାଗୁଥିବା ଏତେ ଏତେ ଦିନ ସବୁ ଗଲା
ପର୍ବତ ତୀଖ ମଂଦିର ବେଢ଼ାରେ ମରୁଥିବା
ତିନି ଶିଶୁଂକ କାଂଦ ଶୁଭିଲାନି ଆମକୁ,
ଶୁଣାଗଲାନି ଜହ୍ନରାତିର ସାହାଯ୍ୟରେ ନଈପଠାରେ
ଯୋନି ବିଦାରିତ ନାରୀର ଶେଷ ଚିତ୍କାର,
ପ୍ରିୟ ବନ୍ୟା ଆସିଲା, ଧୋଇଦେଲା କିଛି ପାପ,
ଆଦିବାସୀ ଚାଲିଲେ ଆଉରି ଘଂଚ ଜଂଗଲକୁ,
ଭୋକରେ ପୋକ ପରି ସଢ଼ିଲେ କିଛି ପ୍ରାଣ,
ଏ ସବୁ ଭିତରେ କିନ୍ତୁ ତମର ଆସିବା ନୋହିଲା ।
ଏବେ ଆସିଛ:

ଆଜି ଭାରି ବ୍ୟସ୍ତ ଅଛି,
ଆଉଦିନେ ଆସ, ଆଉଦିନେ ତମ କଥା ଲେଖିବି।
ଏଇତ ସକାଳ ସରିଲା ଏମିତି ବୁଲିବାରେ
ପବନ ସହ ଗପିବାରେ,
ଆମ୍ବ ଡାଳରେ କୋଇଲିର ବିଳମ୍ବିତ କାନ୍ଦ ଶୁଣିବାରେ,
ଗଛମାନଙ୍କ ଭୋକ ଯେତେ ଅନୁଭବିବାରେ।

ଏବେ ସାନ ପୁଅ ଅଳି କରୁଛି
ତା' ପାଇଁ ଏରୋପ୍ଲେନ, ସ୍ଲେଜଗାଡ଼ି ବନ୍ଧୁକ
ଓ ଧନୁଶର କିଣାହେବ।
ବଡ଼ ପଢ଼ିବ ଇଂରାଜୀ,
ଆଜି ପୁଣି ଚାରିଘଣ୍ଟା କ୍ଲାସ ଅଛି, ଚିଠି ଲେଖା ଅଛି,
ବଦଳିର ଆଶଙ୍କାରେ ଧରାଧରି ଅଛି,
ଘର ପ୍ଲାନ ପାଇଁ ବି.ଡ଼ି.ଏ.ରେ ହାତଖର୍ଚ୍ଚ ଦେବା ଅଛି।
ସଂଧ୍ୟାରେ ପୁଣି ପ୍ରେସ୍ ଯିବି, ରାତିରେ ଅଛି ବାହାରେ ଖାଇବା।

ତମେ ତ ଏବେ କଳଙ୍କିତ ଇତିହାସର
କଙ୍କାଳ ପରି ଦିଶୁଛ, ଆଖି ଅଛି, ଆଖି ନାହିଁ
ଆମ୍ବା ତମର କେଉଁଠି ଜାଣିଥିବେ ଅନନ୍ତ ଗୋସାଇଁ....
ଆଉ ଦିନେ ଆସ
ଆଉ ଦିନେ ତମକଥା ଲେଖିବି,
ଆଜି ଭାରି ବ୍ୟସ୍ତ ଅଛି।
ତମେ ଏତେ ଦିନ ରହିଗଲ ଯେ
ଝୁଲିଥିବା ବରଗଛର ଓହଳରେ ଡାଳ ଧରିଲାଣି,
ବର୍ଷା ଦେଖିଲ ତମେ, ବସନ୍ତ ଦେଖିଲ
ଦିନ ଦିନ ଧରି ହସିଲ, ସ୍ୱପ୍ନ ଦେଖାଇଲ ସଭିଙ୍କୁ;

ସମସ୍ତେ କଥା ହେଲେ ଘରେ ଘରେ—
କହିଲେ 'ଶୁଣୁଚ, ସେ ଏତେ ପରାକ୍ରମୀ ଯେ
ପରାସ୍ତ ଲେଖା ହୋଇନି ତାଙ୍କ କପାଳରେ....।
ତମେ ଏବେ ଚାଲିଯିବ ବୋଲି ବ୍ୟସ୍ତ ହୋଇ କହୁଛ....
ଲେଖିଦିଅ କିଛି ମୋ କଥା ଇତିହାସପାଇଁ ତମ କଲମରେ....
ଆଜି ଭାରି ବ୍ୟସ୍ତ ଅଛି,
ଆଉ ଦିନେ ଆସ,
ଆଉ ଦିନେ ତମ କଥା ଲେଖିବି।।

# ଦକ୍ଷିଣ ଦିଗକୁ ଯାଅ

ରୋହିଣୀକାନ୍ତ ମୁଖାର୍ଜୀ

ଦକ୍ଷିଣ ଦିଗକୁ ଯାଅ
ଦେଖିବ
ଧଳା ତମ୍ବୁମାନେ ପହରା ଦଉଛନ୍ତି ଗୋଲାପ ଗଛ ମାନଙ୍କୁ
ତାରା ଭଳି ପ୍ରାଗୈତିହାସିକ କିଛି ଲୋକ
ଆଣ୍ଠୁ ସନ୍ଧିରେ ମୁହଁ ପୋତି କାନ୍ଦି ଚାଲିଚନ୍ତି
ତାଙ୍କ ପଛରେ ସକାଳ ଝରୁଚି ।

ସେ ଦୃଶ୍ୟ ଦେଖିଲେ
ତମେ ପୂର୍ବର ବଗିଚା କଥା ଭୁଲିଯିବ
ସେ ଦୃଶ୍ୟ ଦେଖି ସାରିଲେ
ତମେ ପଶ୍ଚିମର କବାଟ କିଳିବ
ସେ ଦୃଶ୍ୟରେ ବୁଡ଼ିଗଲେ ଥରେ
ତମେ ଉତ୍ତର ଝରକାଦେଇ ପକ୍ଷୀ ଦେଖିବନି

ବିଶ୍ୱାସର ପରବର୍ତ୍ତୀ କାହାଣୀ
ଜୀବନ ତମାମ୍ ଲୁହ
ତମେ ତାରା ଭଳି ପ୍ରାଗୈତିହାସିକ ପାଲଟିଯିବ

ଯାଅ
ଦକ୍ଷିଣ ଦିଗକୁ ଯାଅ ।।

# ମହୁମାଛିର ଗୀତ

ରଞ୍ଜିତା ନାୟକ

ପ୍ରତି ମୁହୂର୍ତ୍ତରେ
ମୃତ୍ୟୁର ସାମ୍ନାସାମ୍ନି
ଏକୁଡ଼ିଶାଳରୁ କଅଁଳିଆ ଜୀବନ ରଡ଼ିରେ
ନିଦମୋର ଭାଙ୍ଗିଗଲା ।।
ଆଖିଖୋଲିଲି
ଝାଡ଼ିଝୁଡ଼ି ହେଇ ଉଠିବସିଲି ବିଛଣାରେ
ଦେଖିଲି –
ଯୋଉ ଅନ୍ଧାରକୁ ସେଇ ଅନ୍ଧାର
ତରଳ ଅନ୍ଧାରର ମୋଡ଼ାମୋଡ଼ା ସ୍ରୋତ
ବହିଚାଲିଛି ଯେ ଚାଲିଛି ।।

ସେ ସ୍ରୋତରେ
ସାଲୁବାଲୁ କେତେକେତେ ଛାଇ
ପୁଞ୍ଜା ପୁଞ୍ଜା ପାହାଡ଼ ପର୍ବତ
ଗଛଲତା, ଆକାଶ, ପଶୁପକ୍ଷୀ
ଏବଂ ଅତୀତରେ ବଞ୍ଚିଥିବା ମଣିଷମାନଙ୍କ
କିଛି କିଛି ଅସ୍ପଷ୍ଟ କୁହାଟ
ରାଜା, ରାଜସିଂହାସନ
ମାଟି ପାଣି ଓ ପବନର ରକ୍ତସ୍ନାନ
ଯନ୍ତ୍ରଣା-ଜର୍ଜର ସଭ୍ୟତାର ଭଙ୍ଗାରୁଜା ସ୍ୱର

କେତେ କୋଳାହଳ
ମୁଣ୍ଡଟେକିଲି
ଖୋଲା ଝରକା,
ଝର୍କାଏ ଆକାଶରେ କେତେ କେତେ ତାରା

ତାରାସବୁ
ଜଳୁଚି ନିଭୁଚି, ନିଭୁଚି ଜଳୁଚି
ଜୀବନ ଧାଇଁଚି ପ୍ରଜାପତିର ଡ଼େଣାରେ
ନୂଆସକାଳେ ।

ନୂଆ ଫୁଲଟିଏ ପାଇଁ
ମହୁମାଛିର ଗୀତ —
ବଞ୍ଚିବାର ନାମ ଜୀବନ
ଏବଂ ଜୀବନର ନାମ ଯନ୍ତ୍ରଣା ॥

# ଛଦ୍ମବେଶ

ହୃଷିକେଶ ମଲ୍ଲିକ

ଦିନ ଗଡ଼ିଯାଉଅଛି, ଯେତିକି ଯେତିକି
ହାଲକ ଯାଉଛି ଶୁଖି, ସେତିକି ସେତିକି।
କୁଞ୍ଚ ପାରି ପିନ୍ଧିଥିବା ଶାଢ଼ୀ ପରି
ଏଇ ଦିହ, ମତେ ପାଲଟି ଦବାକୁ ହବ :
ଠାଏ ଠାଏ ଦେଖ, ଦିଶିଲାଣି
ଏ ଶାଢ଼ୀରେ କାନିଫଟା ଦାଗ : :
କିମିତି ମୁଁ ଓହ୍ଲେଇବି ଏଇ ଦିହ ?
ଭାବି ଭାବି ଅକ୍ଷିତ ପିଲାଙ୍କ ପରି
ଦିଶିଲାଣି ମୁହଁ।
'ମୁଁ' ବୋଲି କିମିତି ବିଶ୍ୱାସ ଯିବ
ତମେ ମତେ ?
ଲହଡ଼ି ଭାଙ୍ଗିବା ପରି କାଳେ ତମେ ହସିଦବ
ଯେତେବେଳେ ଜାଣିବ ଯେ, ମୁଁ ଅଟଇ
କାନ, ଆଖି, ଓଠ ପିନ୍ଧିଥିବା, ହାତଗୋଡ଼
ପିନ୍ଧିଥିବା ପୁଳାଏ ଶୂନ୍ୟତା,
ଚାଉଁ ଚାଉଁ ଦିହରୁ ମୋ' ନହୁ ଶୁଖି ଯାଉଅଛି
ଏଇ ଡରେ ଖାସ, କାଳେ କଉଁଦିନ
ପ୍ରତାରକ ବୋଲି ତମ ଆଗେ ଧରାପଡ଼ିଯିବି :
କିମିତି ଦିହକ ଗଲା
ମିଛହାତ, ଗୋଡ଼ ଖଞ୍ଜିହେଲି ?
ବାଛିବୁଛି କଣ୍ଟିଏ ବେକରେ ଖଞ୍ଜିଲି
କଟୀଟିଏ ପିନ୍ଧିଲି ମୁଁ ଅତିକ୍ଷୀଣ କରି
ତିଳ ଫୁଲ ପରି ନାକ କଲି ମୁଁ ତିଆରି
କିମିତି ବହକ ଗଲା ମିଛ ଆଖି, ଓଠ
ମୁଁ ପିନ୍ଧିଲି ?
ମିଛେ ମିଛେ କିମିତି ମୁଁ ରଜବତୀ ହେଲି ?
ଦେଖ, କଥା ଖୋଲିଯିବା ଆଶଙ୍କାରେ
କିପରି ମୋ ଚଉଦିଗ ଭର୍ତ୍ତି :
କିପରି ହୋଇଛି ଭର୍ତ୍ତି ଘର ମୋର, ଭବିଷ୍ୟତ ମୋର

ଦେଖ, ଅତି ଦିହ-ଘଷା ଲୋକେ
ଆଖି ଭିଣି ଭିଣି କରି ଚାହିଁଲେଣି ମତେ ।

କହିଲତ ନିଜେ ଦେଖ;
ସନ୍ତର ପନ୍ତର ହୋଇ ଏଇମିତି ମରୁଥିବି କେତେ ?
କେତେ ଦିନ ଆଉ, ତମ ପାଖେ
ନିଜକୁ ମୁଁ ନୁଚାଇବି ?
ପ୍ରତ୍ୟେକଟି ଆଚରଣ ମୋର
ତମେ ଲକ୍ଷ୍ୟ କରୁଥିବାବେଳେ
କେତେଦିନ ଆଡ଼ ଆଡ଼ ହୋଇ ରହିଥିବି ?
କେତେ ଡ଼େରି ତମ ଆଗେ
ଦୁଇ ହାତ ଟେକି ଛିଡ଼ା ହବା ?
କେତେ ଡେରି ଆଉ ମୋର
ସବାଶେଷ ଅପାସ୍ତୁକ ହବା ? ?

# ଆଫ୍ରିକା

ଶତ୍ରୁଘ୍ନ ପାଣ୍ଡବ

ଯେଉଁଠି ହିଡ଼ ପଡ଼ିଯାଇଛି
ରକ୍ତର ସବୁଜ କ୍ଷେତ ମଝିରେ
ସେଠି କ'ଣ ପାଣି ବହିପାରିବ
ସୁଅ ପ୍ରାୟ ?
ଯେଉଁଠି ହିଡ଼ ପଡ଼ିଯାଇଛି....

ଯେଉଁଠି ପରଳ ଢାଂକି ରହିଛି
ଦୃଷ୍ଟିର ଦିଗନ୍ତରେ
ସେଠି କ'ଣ ଆଲୋକ ପାଇଁ ଯଥେଷ୍ଟ
କୋଟିଏ ସୂର୍ଯ୍ୟ ?

ଯେଉଁଠି ପବନର ତଣ୍ଟି ଚିପି ଦେଇଛି
ସଂଗୀନ୍‌ର ମୁନ
ସେଠି ବି ପତ୍ର କାଇଁ ଯେ
ମର୍ମର ଶୁଭିବ ?

ଯେଉଁଠି ରକ୍ତ ବହି ଶୁଖିଯାଇଛି
ଗଛବୃକ୍ଷଙ୍କ ଦିହରୁ—
ଯେଉଁଠି ଅଜସ୍ର ପକ୍ଷୀଙ୍କ
ଛିଣ୍ଡା ପରରେ ପୋତି ହୋଇଯାଇଛି
ଆକାଶ...
ଯେଉଁଠି....
ସେ ଜାଗାର ନାଁ କ'ଣ ଆଫ୍ରିକା ?

ଆକାଶ ସବୁ କାଳେ ହିଁ ଆକାଶ
ଯଦି ତୁମ ହୃଦୟ ଭିତରେ କେଉଁଠି
କା' ଲାଗି ରକ୍ତସ୍ରାବ ହେଉଥାଏ—
ଯଦି ଫୁଲର ପାଖୁଡ଼ା ପ୍ରାୟ
ହୃଦୟର ଦୁଆର... ଝର୍କା ଖୋଲିଯାଉଥାଏ,
ସେଠି ହିଁ ଦେଖି ପାରିବ
ଆଫ୍ରିକାର ଦୃଶ୍ୟ, ଆକାଶର ଦୃଶ୍ୟ ।

ହିଡ଼୍‌ହୀନ କ୍ଷେତର ଦାଢ଼ରେ
ପିଚ୍ ପିଚ୍ କଳା ରକ୍ତରେ ଯେଉଁଠି
ମାଟି ଦିଶେ ଛନ୍ ଛନ୍
ସେଠି ମଣିଷ ସ୍ୱୟଂ ସୂର୍ଯ୍ୟ, ସ୍ୱୟଂ ଆକାଶ....

ରକ୍ତରେ ଯିଏ ବାଡ଼ ପକାଅ
କ୍ଷେତକୁ ଯିଏ ଭାଗ ଭାଗ କର
ଜାଣିରଖ... ଜାଣି ରଖ
ମୁକ୍ତିର ଅନ୍ୟ ନାମ.. ହୃଦୟର ଅନ୍ୟ ନାମ
ଆକାଶର ଅନ୍ୟନାମ
ଆଫ୍ରିକା.... ଆଫ୍ରିକା....

# ଭିଟାମାଟି

ହୃଦାନନ୍ଦ ପାଣିଗ୍ରାହୀ

ଟୋପାଏ ବର୍ଷା ପଡ଼ିଲେ
ବିଭୋର ହେଇ ବାସିଉଠେ ମାଟି
କୁଆ କା' କଲେ
ଫର୍ଚ୍ଚା ହେଇଯାଏ ଆକାଶ
କୋଇଲିର କୁହୁକୁହୁରେ
ବଉଳେ ଆମ୍ବ, ଫୁଟେ ବସନ୍ତ
ଅଳସେଇ ଅଳସେଇ ନଈ ବହେ
କାଟି କାଟି ଅଙ୍କାବଙ୍କା
ବିଲବଣ ପାଟ ।

ଯେତେଥର ଛାଡ଼ିଯିବାକୁ ଭାବିଚି
ସେତେ ଥର ଭିଡ଼ି ଧରିଚି ମାଟି
ପଛରୁ ଡାକିଚି କିଆ କନିଅର ଗାଆଁ
ଗହଳିଆ ଗଛ ଛାଇ, ମିଠା ଜହ୍ନରାତି ।

ପଛରୁ ଶୁଭିଚି ଯୋଗୀର କେନ୍ଦରା
ଗାଈଆଳ ବଂଶୀ
ଡାକିଚି ସାବ୍ଜାକ୍ଷେତ
ନଈପଠା, କାଶତଣ୍ଡୀ ଫୁଲ
ଡାକିଚି ଜହ୍ନଆଲୁଅ
ଆକାଶର ଚୁନାଚୁନା ମେଘ
ପଛରୁ ଡ଼ାକିଚି ମୋତେ ଖୋଲାଡ଼ିହ, ଚାଳଘର
ଜୁଲୁଜୁଲୁ ହାରିକେଣ ବତୀ
ରାତିରେ ମୋ ଫେରିବା ବାଟକୁ ଚାହିଁ
ଚୁଲୀ ମୁଣ୍ଡରେ ଢୁଳେଇ ପଡ଼ିଥାଏ
ଯଉଁ ମାଆଟି
ସେ ମୋ ଭିଟାମାଟି ।।

# ତମେ ନିଜେ ପ୍ରେମ

ପ୍ରବାସିନୀ ମହାକୁଡ଼

ତମେ ନିଜେ ପ୍ରେମ
ତମେ ନିଜେ ଜୀବନ
ମୁଁ ତ ଅସ୍ଥିରତାରେ
ଛଟପଟ ଡ଼ହଳ ବିକଳ ଝଡ଼ର ପବନ ।

ତମେ ପ୍ରେମ କାରଣ ତମେ ସହିନିଅ
ମୋର ସମସ୍ତ ଭୁଲାପଣ ।
ଏଇ ଆସେ
ଏଇ ଯାଏ
କେତେବେଳେ ଫୁଲର ବାସ୍ନାରୁ
ଚିଠିର ଉତ୍ତରରୁ
ଅପାଶୋରା କାହାଣୀର ଶେଷ ପୃଷ୍ଠାରୁ
ମତେ ଅପେକ୍ଷା କରିଥିବା
ଶବ୍ଦର ତରଂଗରୁ ।

ଏ ପ୍ରତୀକ୍ଷା କେବେ ବି ସରନ୍ତା ନାଇଁ
ଅବଶିଷ୍ଟ ଜନ୍ମପାଇଁ
ମତେ କହିଦିଅ ହେ ମୋର ସୁଦୂର ପ୍ରେମିକ :
ସତେ କ'ଣ ଶୁଭେ ନାଇଁ
ପହଂଚି ପାରେ ନାଇଁ ପବନର ଢେଉ
ଆଉ ମେଘର ପାଚେରୀ ଡେଇଁ
ମୋ ଆତ୍ମାର ଡ଼ାକ ?

ଏଇ ମୁହୂର୍ତ୍ତରେ ଇଚ୍ଛା ହେଉଚି
ଲେଖିବାକୁ ତମଲାଗି
ଆଜି ପାଇଁ କାଲିର କବିତା
କାଲି ପାଇଁ ଆଜିର କବିତା
ଜାଣେ ତମେ ଭଲପାଅ

ଚୁପ୍‌ଚାପ୍ ଦେଖିବାକୁ
ଏଇ ଉଦାସୀ ମୁହଁକୁ
ଚାରିଆଡ଼େ ଭରିଦେଇ
ତୀବ୍ର ନୀରବତା ।

# ମାତ୍ର ଗୋଟିଏ ଜନ୍ମ

ପ୍ରସନ୍ନ କୁମାର ମହାନ୍ତି

ମନେହୁଏ ପ୍ରତ୍ୟେକ ପଦପାତରେ
ତିଆରି ହୁଏ ଗୋଟିଏ କରି
        ପାପର ବଖରା
ପ୍ରାୟ ପ୍ରତ୍ୟେକଟି ଉଚ୍ଚାରିତ
        ଶବ୍ଦରେ ଝଡ଼ିପଡ଼େ
ଗୋଟିଏ ଲେଖାଁ ସୁକୃତର ଫୁଲ
ମାତ୍ର ଦିନଟିଏର ହିସାବରେ
        ବାତିଲ୍ ହୋଇଯାଏ
ବର୍ଷ ବର୍ଷର ସଂଚିତ ପୁଣ୍ୟ ।
(କାଳକାଳର ଗଚ୍ଛିତ ପାପ ସେମିତି
କ'ଣ ଲିଭି ଯାଉଥିବ
ଗୋଟିଏ ଗୋଟିଏ ଉଜ୍ଜ୍ୱଳ ପୁଣ୍ୟରେ ?)

ଆତ୍ମାହୁଏ ଏହିପରି
        ଲହୁ ଲୁହରେ ରକ୍ତାକ୍ତ
ସହସ୍ର ସହସ୍ର ଦୃଶ୍ୟ ଓ
        ଅଦୃଶ୍ୟ ଅସ୍ତ୍ରାଘାତରେ ।
ଆବେଗରେ ଓଦା ସମ୍ମୋହିତ କବି
ନିର୍ବାଣ ଲୋଡ଼ାନାହିଁ ବୋଲି
        ଉଚ୍ଚାରଣ କରେ ।
(କିଭଳି ଦ୍ରବ୍ୟ ସେ ନିର୍ବାଣ ?)
ନିର୍ବାଣ ମିଳେ ସତେ ଏଡ଼େ ସହଜରେ....

ଗୋଟିଏ ଜନ୍ମ ହିଁ ଯଥେଷ୍ଟ
ରାଜାର ଜନ୍ମ ହେଉ
        ଅବା ହେଉ ରୟତର
ମଲ୍ଲର ହେଉ ଅଥବା ମଲୁର ।
ଗୋଟିଏ ଜନ୍ମ ଢେର୍....
ଭୋଗ ମିଳୁ ଅବା ଦୁଃଖ,
        ପ୍ରେମ ମିଳୁ କି ଘୃଣା,

ଆୟୁ ମିଳୁ ବା ଜହର,
ମିଳୁ ଆହାର ନତୁବା ପ୍ରହାର.....
ଗୋଟିଏ ଜନ୍ମ ହିଁ
ବୁଝେଇଦିଏ ସବୁକିଛି :
ଗୋଟିଏ ଜନ୍ମ ବୁଝେଇଦିଏ
ଆଲୁଅ ଓ ଅଂଧକାର
ଉପଭୋଗ ଓ ଅତ୍ୟାଚାର.....
ବୁଝେଇଦିଏ ସେ ଫୁଲ ଶେଯ
ପୁଣି ଖଣ୍ଡାଧାର
ଅଶନ ଓ ଅନାହାର
ପ୍ରତ୍ୟାଖ୍ୟାନ ଓ ପୁରସ୍କାର;
ଆସକ୍ତି ଓ ନିର୍ଲିପ୍ତତା
ପ୍ରେମ ଓ ନିଃସଂଗତା
ସଂସାର ସଂସାରୋତ୍ତର
ସୁଷୁପ୍ତି ଓ ଉଜାଗର
ବିଚାର ନିର୍ବିଚାର
ଲାଳନ ତଥା ସଂହାର ।

ଗୋଟିଏ ଜୀବନ ବେଶ୍
ଭରିଦିଏ ସମସ୍ତ କଳସ
ଗୋଟିଗୋଟି ସବୁ କାମନାର,
ମାତ୍ର ଗୋଟିଏ ଜନ୍ମ :
ଦେଖେଇ ଦିଏ ଉଭୟ
ଅସୁର ଓ ଈଶ୍ୱର ।।

# ଭୁଲ ସମୟର ଠିକ୍ ଚରିତ୍ର ପାଇଁ

ଅମରେନ୍ଦ୍ର ଖଟୁଆ

ଆଖି ଆଗରେ ବିପୁଳ ସୃଷ୍ଟିର ସାମର୍ଥ୍ୟ
ବଂଚି ରହିଲା ଭଳି ଇତିହାସ ଓ
ମୃତ ବ୍ୟକ୍ତିଙ୍କ ଆଲୋଡ଼ିତ କିଂବଦଂତୀ ।।

କାହାକୁ ବିଶ୍ୱାସ କର ପଳାତକ ଚରିତ୍ର
ସାମ୍ନାରେ ଇତିହାସର ରାଜ ପୋଷାକ ରକ୍ତ ଜର୍ଜରିତ;
ଭୟଂକର ସମୟର ବାଘନଖୀ ହିଂସ୍ରତା ।
ଲଂଗଳା ପାଶବିକତାରେ ପାଖକୁ ପାଖକୁ ମାଡ଼ିଆସେ ଓ
ତୁମ ପଛରେ ତୁମ ନିଜର ଅହଂକାର ବାଡ଼ଟାଏ ଛିଡ଼ା
କରି ଦେଇଥାଏ ଓ ତୁମ ସାମ୍ନାରେ ମଧ୍ୟ ।।

ତମ ପେଟରେ ଅଚାନକ ଭୟ ଅନୁଭବର ହାତୁଡ଼ି
ପିଟୁଥାଏ । ତମ ପିଂଜରାରେ ଭୟାନକ ରାତିର କଡ଼
ଲେଉଟାଇବାର ନିଶ୍ଶବ୍ଦ ଚାଂଚଲ୍ୟ ଓ ତମ ମୁଂଡ଼ ଭିତରେ
ଏକ ନିର୍ଦ୍ଦିଷ୍ଟ ବିସ୍ଫୋରଣର ଜନ୍ମଦିନ ଏଇ ମୁହୂର୍ତ୍ତରେ
ଏକ ସ୍ଥିର ପତନର କ୍ରୋଧୀ କ୍ରମବିସ୍ତାର ଏଇ ନାକ୍ଷତ୍ରିକ ବେଳାରେ ।।

ତମେ ନିଶବ୍ଦରେ ପଡ଼ିରହ ବର୍ଷ ବର୍ଷର ଖରା ବର୍ଷା ପବନ କାକର
ଖାଇ ନିରୁପାୟ ଦୁର୍ବଳତାର ଚମତ୍କାର ଫସିଲ ଗଦା
ହେଲା ପର୍ଯ୍ୟଂତ । ତାପରେ ପାଗଳ ପବନର ସୁ ସୁ ଶବ୍ଦ
ବାରଂବାର ତମ ପାଖରେ ଗଜୁରି ଉଠୁଥିବା ଛୋଟିଆ ଗଛକୁ
ଡରାଉ ଥାଏ ଓ ତମକୁ ମଧ୍ୟ ଉଡ଼ାଇ ଫିଂଗି ହଜାଇ
ଦେବାର ଧମକ ।

ଇଏ କି ଅବସ୍ଥା, ଭୟର ରାତିରେ ଅହଂକାରର ଆକାଶ ସାରା
ନା ଥାଏ ଆଶାର ଚଂଦ୍ର ଓ ତାରା, କେବଳ
ମାଇଲି ମାଇଲି ନିରୁଦ୍ଦିଷ୍ଟ ଚେତନାର ନିର୍ଯ୍ୟାତିତ ପ୍ରଗଣା,
ଏକ ସମୟାତୀତ ଅପମୃତ୍ୟୁର ପରିଚିତ ଅଗଣା ।।

ବାଃ, ଏଭଳି ଏକ ନିୟମିତ ଖେଳକୁ ତମେ ଅସ୍ୱୀକାର କର
ପଳାତକ ଚରିତ୍ର : କିନ୍ତୁ ତମେ ଇଏ ସ୍ୱୟଂ ସ୍ୱୀକୃତ

ଘଟଣାର ବନ୍ଦୀ ରଚୟିତା ଏ ସମୟ ସ୍ଥାୟୀ ଜଂଜାଳର
ସ୍ଥିର ନିର୍ବାସିତ ରାଜପୁରୁଷ ।

ତମେ ଇ କହ, ଯେବେ ଆଲୋକିତ ଦିନଂକର
ଅହରହ ନିଃଶ୍ୱାସର ଭରସା ଥିଲା ପବନରେ ବ୍ୟାକୁଳ
ସଭ୍ୟତାର ପରିଚିତ ଆଲୋଡ଼ନ ଥିଲା ଓ ଇତିହାସର
ଚିହ୍ନା ପୃଷ୍ଠାରେ ତମର ଅକ୍ଷର ଥିଲା ।
ତମେ ନିଜ ପାଇଁ କିଛି କଲ ନାହିଁ କାହିଁକି ?

# ବାପା

ଭାଗୀରଥି ମିଶ୍ର

ବାପା ପାଦ ଉଠାଅ
ତମକୁ ଆକାଶ ହାତଠାରି ଡ଼ାକୁଛି ::
ବହୁଦିନ ହେଲାଣି ହଜିଯାଇଛି
ମୋର ଛବି ବହି
କେଜାଣି କେଉଁଠି,
ଶୂନ୍ୟକୁ ଲାତ ମାରି
ପିକ୍ କିନା ହସ,
ନିଜର ଗଭୀର ନିଦରେ
ନିଜର ନିଆରା ସ୍ୱପ୍ନ
ବହୁ ଦିନ ହେଲାଣି କେଉଁଠି :

ମୋର ଆଙ୍ଗୁଠି ଗଳୁରିଲାଣି
ବାପା;
ଉଠ, ହାତ ବଢ଼ାଅ ;

ତମେ ଆଣି ଦେଇଥିବା ବେଲୁନ୍
ଏବେ ବି ମୋ' ହାତରେ କେଉଁଠି,
ଜୋତା ରଙ୍ଗୀନ ଚଷମାର ଫଟୋ
ଏବେ ବି କେଉଁଠି,
ମୁଁ ଦୌଡ଼ି ଯାଉ ଯାଉ
ଝୁଂଟି ପଡ଼ି ଉଠି
ପୁଣି ଦୌଡୁଥିବାର କ୍ଷତ
ଏବେ ବି କେଉଁଠି;

ବାପା, ଆସ,
ଆସ ଏଥର
ମତେ ମୋର ସବା ସାନ ପୁଅ
ହାତ ଠାରି ଡ଼ାକୁଛି ।

# ଭୟ

ସୂର୍ଯ୍ୟ ମିଶ୍ର

ଆଜି କଣ ଶେଷଦିନ ରମଣର ସ୍ୱପ୍ନ ଦେଖିବାର ?
ପବନର ନିଃଶ୍ୱାସରେ ଟଳମଳ ଦେହର ବୋଇତ
ଘଟଣାଙ୍କ ଆଲିଙ୍ଗନ ତୃତୀୟାଙ୍କ ଯବନିକା ପାତ;
ଭୟର ଉତ୍କୀର୍ଣ୍ଣ କ୍ଷତ ନା ଅଧିକ ଭୟର ଦୁର୍ଗ
ଭୁଷୁଡ଼ିବ ଉପରକୁ ମୋର ଟେକି ତାର
କଳା ମଚ ମଚ ଲୋମଶ ଭୂଗୋଳ

ସବୁ ରାତି ବିଛଣାରେ ଦେଖୁଥିଲି ସ୍ୱପ୍ନ
ଶେଷ ହେବ ସବୁ ଭୟ ସବୁ ଅପମାନ
ଅଭିମାନ ସପନ ସରାଗ ପୁଣି ପ୍ରିୟତମ ରକ୍ତ ପରି ଦୁଃଖ;
ଆସୁଥିବା ସୂର୍ଯ୍ୟ ତେଜେ ଜଳିଯିବ ଯେତେ କ୍ଲାନ୍ତି ଯେତେ ଅପଚୟ,
ଆଜି କିନ୍ତୁ ସେ ସବୁର ଇତି ହେବ
ପାଲଟିବି ନିର୍ବେଦ ମୂର୍ଦ୍ଧାର
ଶୋକ ପାଇଁ ଆଉ କା'ର କେତେସ୍ୱପ୍ନ ହେବ ନାହିଁ ଦେଖି।

ମୁଁ ନିଜେଇ ଶୋକାତୁର ଦସ୍ତଖତ ପରି
ଭୟର ଲୋମଶହାତେ ବାରମ୍ବାର ଆତଙ୍କରେ ସତେ
ଡରକୁଳା ପାଦ ଚିପି ଚାଲୁଥାଏ ନିଜକୁ ବୁଝାଇ ?
ଆଜି କିନ୍ତୁ ଭୟଭର୍ତ୍ତି ସବୁଆଡ଼େ
ଭୟମୟ ଜୀବନ, ପୃଥିବୀ,
କାହିଁ କେତେ ବିଲକ୍ଷଣ
ଦୁଃସ୍ୱପ୍ନରେ ଯାଉଥାଏ ମରି।
ଦର୍ପଣରେ ଦେଖୁଥାଏ ଶ୍ରୀହୀନ ଦେହଟା ନିଜର,
କାଛରେ ନିଜର ଛାଇ, ସେ ଛାଇରେ ଛିଦ୍ର ଚାଲିଆସେ,
କାନରେ ଆଙ୍ଗୁଠି ଦେଇ ନିଜ ପ୍ରାଣ ଘୁଁ ଘୁଁ ଶବ୍ଦ ଶୁଣେନାହିଁ
ସବୁ ଚେଷ୍ଟା ମରିଯାଏ,
ଭୟ ଟାଳେ ସବୁ ସୀମା ଡ଼େଇଁ।

ବାଲି ଅବା କାଦୁଅରେ ପାଦଚିହ୍ନ ଦେଖାଯାଉ ନାହିଁ,
ଗଛ ସବୁ ଫଳସବୁ ପତ୍ରସବୁ ସୁନେଲୀ ସୁନେଲୀ

ହାତେଧରି ବିଷଲଡ୍ଡୁ ଗଧରେ ସବାର ହୋଇ
କୁଣ୍ଢାଇପକାଉଥାଏ ପ୍ରେତାତ୍ମାମାନଙ୍କୁ
ଦେହଯାକ ତେଲ ସାଲୁବାଲୁ ।

ଲଙ୍ଗଳା ମୋ ସୁନାଦେହ କେବଳ ବେକରେ ଯାହା
ଛବା କୁସୁମର ମାଳ
ଛିତାପଟ ଅଛି ରାୟ ଅଛି ବୋଲି ହାତଠାରି ଡ଼ାକୁଥାଏ
ଭୟଙ୍କର କୋଳାହଳ, ଅତ୍ୟନ୍ତ ବିଶାଳ ।

ଆଜି କ'ଣ ଶେଷଦିନ ରମଣର ସ୍ୱପ୍ନ ଦେଖିବାର
ପବନର ନିଃଶ୍ୱାସରେ ଟଳମଳ ଦେହର ଭୂଗୋଳ ?

# ଦର୍ଜା ସେପାଖ ଲୋକଟି

ପ୍ରଦୀପ ବିଶ୍ୱାଳ

ମହମବତୀଟିଏ ଏକି
ସ୍ଥିର ଅବିଚଳ
ଅଥଚ ମୁହୁର୍ମୁହୁ ତରଳି ଯାଇଥାଏ
ଦପ୍ ଦପ୍ ନିଆଁରେ
ଦର୍ଜା ସେପାଖ ଲୋକଟି
ପ୍ରତି ମୁହୂର୍ତ୍ତରେ ତରକି ଯାଇଥାଏ
ଓ ନିଃଶେଷ ହେଇ ଯାଇଥାଏ
ନିଜେ ନିଜେ ନୀରବରେ
ଫିଙ୍ଗିଦେଇ ଅନ୍ଧାରକୁ
ଆଲୋକର ଖଣ୍ଡ ଖଣ୍ଡ
ବର୍ଚ୍ଛା ଓ ତଲୱାର ।
ଯଦିଓ ଅନ୍ଧାରର ବିଜୟଧ୍ୱଜା
ଉଡୁଥାଏ ଫରଫର
ଦର୍ଜା ଏପଟେ ଆଲୋକ ଓ କୋଳାହଳ
ଅସ୍ଥିର ଆବେଗରେ ଉତ୍କଣ୍ଠିତ
ଅନେକ ଢଳ ଢଳ ଆଖି
ଏବଂ ଦର୍ଜା ସେପାଖରେ
ସତେଜ ନୀଳ ଅନ୍ଧାର ଭିତରେ
ଛିଡ଼ା ହୋଇଥାଏ
ଛାଇଟିଏ । ଲୋକଟିଏ
ସେମିତି ସ୍ଥିର ଓ ଅବିଚଳ ।।

# ଚିତ୍ରକର

ମାନସ ରଂଜନ ମହାପାତ୍ର

ମୋର ବହୁ ସଙ୍ଗୀତ
ତୋ'ର ଅମାପ ଶୂନ୍ୟରେ
ସୀମାବଦ୍ଧ
ଇଥରାୟିତ ଅନେକ ଲହର
ତୋ'ର ପଦ୍ମଯୋନିରେ
ଚିନ୍ତାର ଚକ୍ରରେ ମୀନ
ତୋ'ର କୁହୁକିତ ଅର୍ଜୁନ ବିମୋହରେ
ଶରବିଦ୍ଧ ।
ତୁ କି ଗୋଟେ ଚିତ୍ରକର !
ଚିତ୍ରି ପାରୁ ନିମିଷକେ
ଫୁଲରୁ ପରାଗ ଅବା ପରାଗରୁ ଫୁଲ
ପ୍ରକାଣ୍ଡ ନଦୀର ସ୍ରୋତ
ରୋକିପାରୁ ଆଖି ମିଟିକାରେ
ମୁହୂର୍ତ୍ତକେ ସୃଜିପାରୁ ଅନେକ ନଗର, ଗ୍ରାମ
ରଂଗ ଓ ତୁଳିରେ :
ସମୟର ସୀମାନ୍ତରେ ମୁଁ ତୋ'ର ସୀମାବଦ୍ଧ ପକ୍ଷୀ
ଅନେଇ ରହିଥାଏ ଖାଲି ଧୂସର ତୋ
ସର୍ଜନାର ଦିଗ୍‌ବଳୟକୁ
ପ୍ରତି ମୁହୂର୍ତ୍ତରେ ବଦଳୁଥିବା ଚିତ୍ରର
ଧାନକ୍ଷେତରେ ଅପେକ୍ଷିଥାଏ
ଆଉ ଏକ ନଗରରେ ତୋ ନଗ୍ନର
ସଂବାଦ ଦେବାକୁ ।।

# ସେ ଲୋକ

ସୁଚେତା ମିଶ୍ର

ଚାଲ ଆମେ ଥରଟିଏ ତାକୁ
ଖୋଜି ବାହାର କରିବା
ନାଁ ଓ ଠିକଣା ଛଡ଼ା
ତା' ବିଷୟରେ ମତେ
ଅନେକ କିଛି ଜଣା ।

ଗଲାକାଲି ଯେତେବେଳେ
ଆଲୋଚନା ହେଉଥିଲା ଯେ
କାହା ଭାଗରେ ପଡ଼ିବ ଖରା
କାହା ଭାଗରେ ଛାଇ
ଆମର ସର୍ବଶେଷ ପରିଣତି ପ୍ରାପ୍ତି ନା ପରାଜୟ
ସେତେବେଳେ ପବନରେ
ଭାସି ଆସିଥିଲା ତା' ଦେହ ଗନ୍ଧ ।
ମୁଁ ନିଜକୁ ଛୁଇଁଲି
ମୋ କାନ, ପାଟି, ହାତ ବନ୍ଧା ପଡ଼ିଛି ।
କେଉଁ ଅସତ୍ୟ ଭିତରେ କେଉଁଠି
ସତ୍ୟ ଓ ପ୍ରେମ ଲାଗି କଲବଲ ହେଉଛି
ସ୍ପନ୍ଦନଟିଏ ।

ମତେ ଲାଗିଲା ଏମିତି ଏମିତି ମୁଁ ମରିଯିବି
ମରିଯିବେ, ମୋ ଭଳି ଅନ୍ୟମାନେ
ସେ କିନ୍ତୁ ଜୀଇଁ ରହିବ
କୌଣସି ସାକ୍ଷୀ ନ ଥିବା
ଆମ ନିଜ ନିଜର ଯନ୍ତ୍ରଣା ଭଳି
ଆମ ଭିତରେ କଦାପି ସାଲିସ୍ କରି ପାରୁ ନ ଥିବା
ପ୍ରବୃତ୍ତି ଭଳି
ନିଜେ ନିଜ ସହ ଲଢୁଥିବା
ଗୋଟେ ପବିତ୍ର ସଂଗ୍ରାମ ଭଳି
ସେ ଥିବ କେଉଁଠି ନା କେଉଁଠି
ଏ ଭ୍ରଷ୍ଟ ମାନବୀୟ ଦୁର୍ଭିକ୍ଷଠାରୁ ଦୂରରେ

ସେ ଆକାଶକୁ ମାଗୁଥିବ ଆଶୀର୍ବାଦ
ମାଟିକୁ ମାଗୁଥିବ ସମୃଦ୍ଧି ।

ଚାଲ ଆମେ ଥରଟିଏ
କେବଳ ଥରଟିଏ
ତାକୁ ଖୋଜି ବାହାର କରିବା ।

# କବି ପରିଚୟ

## ସଚ୍ଚିଦାନନ୍ଦ ରାଉତରାୟ (୧୯୧୩)

ଆଧୁନିକ ଓଡ଼ିଆ କବିତାର ଅଗ୍ରଦୂତ, ନୂତନ ମାର୍ଗ ଦର୍ଶକ, ମୋଡ଼ ପରିବର୍ତ୍ତନକାରୀ କବି, ପ୍ରଗତିବାଦୀ ଧାରାର ପ୍ରବର୍ତ୍ତକ, ସମାଜବାଦୀ ବୈପ୍ଳବିକ ଚେତନାର ଦିଶାରୀ, ଓଡ଼ିଆ କବିତାରେ ନୂତନ ପ୍ରତୀକ, ରୂପକଳ୍ପ, ବାକ୍‌ରୀତି ଛନ୍ଦର ପ୍ରବର୍ତ୍ତକ, ରୋମାଣ୍ଟିକ୍ ବାସ୍ତବବାଦୀ, ମାନବବାଦୀ, ପ୍ରୟୋଗବାଦୀ କବି। ସାହିତ୍ୟ ଏକାଡ଼େମୀ ଓ ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ। ୬୦ ବର୍ଷରୁ ଅଧିକକାଳ କବିତା ରଚନାରେ ପ୍ରବୃତ୍ତ, ସଂପ୍ରତି ଓଡ଼ିଶାର ସର୍ବମାନ୍ୟ କବି।

ପ୍ରକାଶିତ କବିତା ସଂକଳନ: ପାଥେୟ (୧୯୩୧), ପୂର୍ଣ୍ଣିମା (୧୯୩୨), ଅଭିଯାନ (୧୯୩୮), ରକ୍ତଶିଖା (୧୯୩୯), ବାଜିରାଉତ (୧୯୪୧), ପଲ୍ଲୀଶ୍ରୀ (୧୯୪୧), ପାଣ୍ଡୁଲିପି (୧୯୪୭), ହସନ୍ତ (୧୯୪୮), ଅଭିଜ୍ଞାନ (୧୯୪୮), ଭାନୁମତୀର ଦେଶ (୧୯୪୯), ସ୍ୱଗତ (୧୯୫୮), କବିତା- ୧୯୬୨, ଏସିଆର ସ୍ୱପ୍ନ (୧୯୬୮), କବିତା- ୧୯୬୯, କବିତା- ୧୯୭୧, କବିତା- ୧୯୭୪, କବିତା- ୧୯୮୩, କବିତା- ୧୯୮୫, କବିତା- ୧୯୮୭, କବିତା- ୧୯୯୦। କବିତା ବ୍ୟତୀତ ତାଙ୍କର ଅନେକ କ୍ଷୁଦ୍ର ଗଳ୍ପ ସଂକଳନ, ଗୋଟିଏ ଉପନ୍ୟାସ ଓ ସମାଲୋଚନା ପୁସ୍ତକ ରହିଛି।

## ରଘୁନାଥ ଦାସ (ଜଟାୟୁ) (୧୯୧୯-୧୯୮୪)

ଉଗ୍ର ବାମପନ୍ଥୀ ବେସାଲିସ୍ କବି, 'ଶ୍ରୀ ଜଟାୟୁ' ଛଦ୍ମ ନାମରେ ୧୯୭୩-୭୪ରୁ ଧାରାବାହିକ ଭାବେ କବିତା ରଚନା କରି ବାମପନ୍ଥୀ ଧାରାକୁ ପରିପୁଷ୍ଟ କରିଛନ୍ତି। ସାମାଜିକ ଅନୁଜ୍ଞା ସହିତ, କଳାତ୍ମକ ଅଭିବ୍ୟକ୍ତି ତାଙ୍କ କବିତାର ମୁଖ୍ୟ ଆକର୍ଷଣ। ଓଡ଼ିଶା କମ୍ୟୁନିଷ୍ଟ ପାର୍ଟିର ଏକଦା ସକ୍ରିୟ କର୍ମୀ ଥିଲେ ବି ପରେ ମୃତ୍ୟୁ ପର୍ଯ୍ୟନ୍ତ କେବଳ ଓକିଲାତି ବୃତ୍ତିରେ ସମ୍ପୃକ୍ତ ଥିଲେ। ଆଦର୍ଶ ରାଜନୀତିଜ୍ଞ ଓ ଦକ୍ଷ ଆଇନଜ୍ଞ।

ପ୍ରକାଶିତ କବିତା ସଂକଳନ: ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା (୧୯୭୨), ପୁନଶ୍ଚ (୧୯୮୩), ଉବାଚ (୧୯୯୧)। କବିତା ପୁସ୍ତକ ବ୍ୟତୀତ ତାଙ୍କର ଅନେକ ଅନୁବାଦ, ପ୍ରବନ୍ଧ, ସମାଲୋଚନା ଓ କ୍ଷୁଦ୍ରଗଳ୍ପ ଗ୍ରନ୍ଥ ରହିଛି।

## ଗୁରୁପ୍ରସାଦ ମହାନ୍ତି (୧୯୨୪)

ଉତ୍ତର ପଚାଶର ଶକ୍ତିଶାଳୀ କାବ୍ୟ ପ୍ରତିଭା। କାବ୍ୟ ଚେତନାରେ ଯୁଦ୍ଧ ପରବର୍ତ୍ତୀ ସ୍ଥିତିବାଦୀ ଭାବନା, ଉଗ୍ର ବାସ୍ତବତା, ବୌଦ୍ଧିକତା, ବ୍ୟଞ୍ଜନା ଓ ସହରୀ ଜୀବନର ଅବକ୍ଷୟ ଅଧିକ ଉପଲବ୍ଧ। ସାଂପ୍ରତିକ ମଣିଷର ବେଦନାବୋଧ, ନିଃସଙ୍ଗତା, ବିଚ୍ଛିନ୍ନତାବୋଧ, କ୍ଳାନ୍ତି, ଅବସାଦ ଓ ବ୍ୟର୍ଥତାର ବିପୁଳ ଚିତ୍ରକାର। କାବ୍ୟ ଭାଷା ସ୍ୱଚ୍ଛ, ଶାଣିତ ଓ ଆଳାପଧର୍ମୀ। ଟି.ଏସ.

ଏଲିଅଟଙ୍କ 'ଦି ୱେଷ୍ଟଲ୍ୟାଣ୍ଡ' ଅବଲମ୍ବନରେ କାଳଜୟୀ କବିତା 'କାଳପୁରୁଷ'ର ରଚୟିତା। ଆଣ୍ଟି-ରୋମାଣ୍ଟିକ୍ ପ୍ରତୀକ ଓ ରୂପକଳ୍ପର ବହୁଳ ପ୍ରଚଳନ ତାଙ୍କ କାବ୍ୟଧାରାର ମୁଖ୍ୟ ଆକର୍ଷଣ। କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ। ଶିକ୍ଷା ବିଭାଗରୁ ଇଂରେଜୀ ଅଧ୍ୟାପକଭାବେ ଅବସରପ୍ରାପ୍ତ।

ପ୍ରକାଶିତ କବିତା ସଂକଳନ: ନୂତନ କବିତା (୧୯୫୫), ସମୁଦ୍ର ସ୍ନାନ (୧୯୭୦), ଆଶ୍ଚର୍ଯ୍ୟ ଅଭିସାର (୧୯୮୮), କବିତା ସମଗ୍ର (୧୯୯୫)।

## ଭାନୁଜୀ ରାଓ (୧୯୨୬)

ତାଙ୍କ କବିତାରେ ଆଧୁନିକ ଜୀବନର ବିଚିତ୍ର ଦିଗନ୍ତ, ବ୍ୟକ୍ତି- ମାନସର ଅଭୀପ୍ସା, ସୌନ୍ଦର୍ଯ୍ୟବୋଧ ପ୍ରକୃତି ପ୍ରୀତି, ଆଧିଭୌତିକ ଭାବନା ଉପଲବ୍ଧ। ନୂତନ ଚିତ୍ରକଳ୍ପ ଓ ପ୍ରତୀକ ପ୍ରୟୋଗରେ ତାଙ୍କର କୁଶଳତା ସ୍ୱୀକାର୍ଯ୍ୟ। 'ନଈ ଆର ପାରି' କବିତା ସଂକଳନପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ।

ପ୍ରକାଶିତ କବିତା ସଂକଳନ: ନୂତନ କବିତା, ବିଷାଦ ଏକ ଋତୁ, ନଈ ଆର ପାରି, ଦର୍ପଣ ସାମ୍ନାରେ ଓ ଚନ୍ଦନ ବନରେ ଏକା।

## ଦୁର୍ଗାଚରଣ ପରିଡ଼ା (୧୯୨୯)

ଧାରାବାହିକ ଭାବେ ଅଶି ଦଶକ ପର୍ଯ୍ୟନ୍ତ କବିତା ଲେଖିଥିଲେବି ଏକମାତ୍ର କାବ୍ୟ ଗ୍ରନ୍ଥ 'ଇନ୍ଦ୍ରାୟୁଧ' ୧୯୬୧ରେ ପ୍ରକାଶିତ। ଛୋଟ ଛୋଟ ପଂକ୍ତିରେ ଲିରିକ୍ ଧର୍ମୀ ଓ ବେଳେବେଳେ ସମ୍ପୂର୍ଣ୍ଣ ଗଦ୍ୟ କବିତା ଲେଖିବାରେ କବିଙ୍କ ସଫଳତା ସ୍ୱୀକାର୍ଯ୍ୟ। ତାଙ୍କ କବିତାରେ ପ୍ରଣୟାନୁଭୂତି, ପ୍ରକୃତି ପ୍ରୀତି ଓ ପାରମାର୍ଥିକ ଜିଜ୍ଞାସାର ସ୍ୱର ପ୍ରକଟିତ।

## ରବି ସିଂ (୧୯୩୦)

ସାମ୍ୟବାଦୀ କାବ୍ୟଚେତନାର ଅନ୍ୟତମ ଉଗ୍ର ପ୍ରବର୍ତ୍ତକ- ସ୍ୱାଧୀନତା ପରବର୍ତ୍ତୀ ଯୁଗୀୟ ଉଦ୍ଭଟତା ଓ ବିରୋଧାଭାସ ବିରୁଦ୍ଧରେ ବରାବର ସ୍ୱର ଉତ୍ତୋଳନ ସହିତ ରାଜନୈତିକ ଅସଂଗତିକୁ ରୋକ୍‌ଠୋକ୍ ସମାଲୋଚନା ଓ ବିଦ୍ରୂପ କରିଛନ୍ତି- ତାଙ୍କ କାବ୍ୟରୂପ ବିଦ୍ରୋହାତ୍ମକ ଓ ବେସାଲିସ୍। ସଂପ୍ରତି ଆତ୍ମଜୀବନୀ 'ନିଃସଙ୍ଗ ପଦାତିକ' ରଚନାରେ ପ୍ରବୃତ୍ତ। ବହୁ ଉପନ୍ୟାସ ଓ କବିତାର ଅନୁବାଦକ ଭାବେ ସୁପରିଚିତ।

ପ୍ରକାଶିତ କବିତା ସଂକଳନ: ପଥପ୍ରାନ୍ତର କବିତା- ୧୯୫୯, ଚରମପତ୍ର (୧୯୬୧), ଶିଥିଳ ଭଲଗା (୧୯୬୨), ଭ୍ରୁକୁଟୀ (୧୯୬୩), ଲାଲ ପାଗୋଡ଼ାର ପ୍ରେତ ଓ ଅନ୍ୟାନ୍ୟ କବିତା (୧୯୬୩), ବିଦୀର୍ଣ୍ଣ (୧୯୬୪), ପାଦଟୀକା (୧୯୬୫), ଅପ୍ରୀତିକର କବିତା (୧୯୬୬), ଜ୍ୱାଳାର ମାଳା (୧୯୬୭), କ୍ଷତ (୧୯୬୮), ବିଷବାଣୀ (୧୯୬୯), ଦୁର୍ଗମଗିରି (୧୯୭୧), ଝଡ଼ (୧୯୭୩), ସର୍ବହରା (୧୯୭୪) ଅନାର୍ଯ୍ୟର ଚର୍ଯ୍ୟାପଦ (୧୯୭୭), ତାରକାର ଲୁହ (୧୯୭୮), ଅଗ୍ନି ବେଦ (୧୯୮୧), ଜମାନବନ୍ଦି (୧୯୮୬), କେବଳ ସଂଗ୍ରାମ (୧୯୮୯), ଭଂଗାହାତର କବିତା (୧୯୯୧), ଝଡ଼ ଗାନ୍ଧାର (୧୯୯୧), ଲୋହିତ ସଂକ୍ରାନ୍ତି (୧୯୯୩), ନବମସ୍ୱର୍ଗ (୧୯୯୪)।

## ଉମାଶଙ୍କର ପଣ୍ଡା (୧୯୩୧)

କବି ମୁଖ୍ୟତଃ ରୋମାଣ୍ଟିକ କାବ୍ୟଚେତନାର ଅନୁସରକ। ପ୍ରଥମ ସ୍ତରର କବିତାଗୁଡ଼ିକ ଲିରିକ୍‌ଧର୍ମୀ ହେଲେ ବି ପରେ ମୁକ୍ତ ଗଦ୍ୟଛନ୍ଦପ୍ରତି ଅଧିକ ଅନୁରକ୍ତ। କବିତା ବ୍ୟତୀତ ଆଲବର୍ଟ ମୋରାଭିଆଙ୍କ କେତୋଟି ଉପନ୍ୟାସ ଓ ବହୁ ଗଳ୍ପର ଅନୁବାଦକ।

ପ୍ରକାଶିତ କବିତା ସଂକଳନ: ରୋମାଣ୍ଟିକ୍ କବିତା (୧୯୫୬), ଇମନ୍ କଲ୍ୟାଣ (୧୯୬୩), କେକା କୁହୁ କାକଳି (୧୯୬୪), ଋତୁ ଓ ତାର ପ୍ରେମିକ ମାନେ (୧୯୭୯), ନିଃଶବ୍ଦ ନୂପୁର (୧୯୮୦)।

## ବିପିନବିହାରୀ ଖମାରୀ (୧୯୩୨)

ପ୍ରାରମ୍ଭିକ କାଳର ଆବେଗପ୍ରବଣ ରୋମାଣ୍ଟିକ୍ ଧାରାରେ ଲିଖିତ କବିତା କ୍ରମେ ସାମାଜିକ ବାସ୍ତବତା ଅଭିମୁଖୀ ହୋଇ ବେଳେବେଳେ ବାମପନ୍ଥୀ ଭାବନାକୁ ସ୍ପର୍ଶ କରିଛି। କେତେକ କବିତାରେ ସାମାଜିକ ଓ ରାଜନୈତିକ ବିରୋଧାଭାସକୁ କବି ବ୍ୟଙ୍ଗଧର୍ମୀ କାବ୍ୟଭାଷାରେ ପ୍ରକାଶ କରିଛନ୍ତି।

ପ୍ରକାଶିତ କବିତା ସଂକଳନ: ମାନସୀ (୧୯୫୩), ସହଯୋଗୀର ଚିଠି (୧୯୬୨), ନୀଳପତ୍ର (୧୯୭୧), ଆଲବମ୍ (୧୯୭୬), ଶୁଣ ସଭାଜନେ (୧୯୮୧), ମଧ୍ୟାହ୍ନର ରଂଗ (୧୯୮୯)।

## ଶ୍ରୀନିବାସ ଉଦ୍‌ଗାତା (୧୯୩୪)

ତାଙ୍କ କବିତାର ବିଶିଷ୍ଟ ବିଭାବ ହେଉଛି ଆବେଗ, ସାଂଗୀତିକତା ଓ ମାନବବାଦୀ ସମ୍ବେଦନଶୀଳତା। ବହୁ ଉପନ୍ୟାସ ଓ କାବ୍ୟଗ୍ରନ୍ଥର ସଫଳ ଅନୁବାଦକ, ବହୁ ଗଳ୍ପ ଗ୍ରନ୍ଥର ରଚୟିତା ବିଦଗ୍ଧ କାବ୍ୟାମୋଦୀ ବ୍ୟକ୍ତିତ୍ୱ। ସଫଳ ହିନ୍ଦି ଅନୁବାଦକ ଭାବେ ବହୁ ପୁରସ୍କାର ଓ ସ୍ୱୀକୃତିର ଅଧିକାରୀ।

ପ୍ରକାଶିତ କବିତା ସଂକଳନ: ପୂରବୀ (୧୯୬୧), ଚାରୋଟି କବିତା (୧୯୬୨), ଆପଣାର ଗୀତ (୧୯୮୦), ପୁନଶ୍ଚ ପୁନଶ୍ଚ (୧୯୮୭) ଏବଂ (୧୯୮୯), ସମୟ ନଇର ଥିଲା (୧୯୯୩)।

## ରମାକାନ୍ତ ରଥ (୧୯୩୪)

'ସପ୍ତମଋତୁ' କାବ୍ୟଗ୍ରନ୍ଥ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଓ 'ଶ୍ରୀରାଧା' କାବ୍ୟଗ୍ରନ୍ଥ ପାଇଁ ସରସ୍ୱତୀ ସମ୍ମାନର ଅଧିକାରୀ ଓଡ଼ିଶାର ଅଗ୍ରଗଣ୍ୟ ପ୍ରୟୋଗବାଦୀ କବି। ସାଂପ୍ରତିକ କାବ୍ୟ ସ୍ୱରକୁ ଅଧିକ ଶାଣିତ, ବୁଦ୍ଧିଦୀପ୍ତ ତଥା ଭାବ-ଗଭୀର କରିବାରେ ସେ ଏକ ଅନନ୍ୟ ପ୍ରତିଭା। ଉଭୟ ଆଙ୍ଗିକ ଓ ଆତ୍ମିକରେ ଚମତ୍କାରିତା, ମିଥ୍, ଚିତ୍ରକଳ୍ପ ଓ ପ୍ରତୀକ ପ୍ରୟୋଗରେ ଅସାଧାରଣ ମୌଳିକତା ତାଙ୍କ କବିତାକୁ ଅସାମାନ୍ୟ ପ୍ରତିଷ୍ଠା ଆଣି ଦେଇଛି।

ପ୍ରକାଶିତ କବିତା ସଂକଳନ: କେତେଦିନର (୧୯୬୨), ଅନେକ କୋଠରୀ (୧୯୬୭), ସନ୍ଦିଗ୍ଧ ମୃଗୟା (୧୯୭୧), ସପ୍ତମ ଋତୁ (୧୯୭୮), ସଚିତ୍ର ଅନ୍ଧାର (୧୯୮୨), ଶ୍ରୀରାଧା (୧୯୮୫) ଶ୍ରେଷ୍ଠ କବିତା (୧୯୯୨)।

## ମନୋଜ ଦାସ (୧୯୩୪)

ପ୍ରଥମେ ରୋମାଣ୍ଟିକ୍ ଓ ପରେ ସାମ୍ୟବାଦୀ କାବ୍ୟାଦର୍ଶ ପ୍ରତି ଆକୃଷ୍ଟ। ସଂପ୍ରତି କବିତା ଅପେକ୍ଷା ଗଳ୍ପ, ଉପନ୍ୟାସ ଓ ଭ୍ରମଣ କାହାଣୀ ଲେଖକ ଭାବେ ବିପୁଳ ସ୍ୱୀକୃତିର ଅଧିକାରୀ। ସାହିତ୍ୟ ଏକାଡ଼େମୀ ଓ ଶାରଳା ପୁରସ୍କାର ବିଜେତା। ତାଙ୍କର ବହୁ ଗଳ୍ପ ପୁସ୍ତକ ଇଂରାଜୀରେ ପ୍ରକାଶିତ। ଜାତୀୟ ଓ ଆନ୍ତର୍ଜାତୀୟ ମାନ୍ୟତାପ୍ରାପ୍ତ ଲେଖକ।

ପ୍ରକାଶିତ କବିତା ସଂକଳନ: ପଦ ଧ୍ୱନି (୧୯୫୪) ଉପନିବେଶ (୧୯୬୫) ନନ୍ଦାବତୀର ମାଝୀ (୧୯୫୭), ତୁମ ଗାଁ ଓ ଅନ୍ୟାନ୍ୟ କବିତା (୧୯୯୨)।

## ବ୍ରହ୍ମୋତ୍ରୀ ମହାନ୍ତି (୧୯୩୪)

ଆଧ୍ୟାତ୍ମିକ ଭାବ ଚେତନାର ନିଷ୍ଠାପର କାବ୍ୟସ୍ରଷ୍ଟା ଶ୍ରୀମତୀ ମହାନ୍ତି ଦୀର୍ଘ ଚାରି ଦଶନ୍ଧି ଧରି ସୃଷ୍ଟିରତ ବରିଷ୍ଠ ନାରୀକବି। ଜୀବନ-ସଂବାହୀ ଦୃଷ୍ଟିଭଙ୍ଗୀ, ନାରୀଚେତନା ଓ ଦରଦୀ ମର୍ମାନୁଭବ ତାଙ୍କ କବିତାର ବୈଶିଷ୍ଟ୍ୟ। ସରଳ ଭାଷା ଓ ବର୍ଣ୍ଣନାତ୍ମକ ଶୈଳୀ ତାଙ୍କ କବିତାରେ ପରିଦୃଷ୍ଟ। 'ଦୃଷ୍ଟିର ଦ୍ୟୁତି' କବିତାଗ୍ରନ୍ଥ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତା।

ପ୍ରକାଶିତ କବିତା ସଂକଳନ: ଅବତରଣ, ଦୃଷ୍ଟିର ଦ୍ୟୁତି, ସ୍ତବକ।

## ଶରତ୍ ଚନ୍ଦ୍ର ପ୍ରଧାନ (୧୯୩୪)

କବିତାରେ ସାଂଗୀତିକତା ପ୍ରତି ବିଶ୍ୱାସୀ ଏହି କବି ଖୁବ୍ ଛୋଟ ଛୋଟ ପଙ୍କ୍ତିରେ ସରଳ ଭାଷାରେ କବିତା ରଚନା କରନ୍ତି। ତାଙ୍କ କବିତାରେ ଲୋକକଥା, ମିଥ୍, ରୂପକଥା ଆଦି ସୁନ୍ଦର ଭାବେ ଚିତ୍ରାୟିତ। ପୁନଶ୍ଚ, ମାନବେତର ଚରିତ୍ରମାନେ ତାଙ୍କ କବିତାରେ ରୂପକ ଭାବେ ପ୍ରଯୋଜିତ। ସେ କବିତା ସମ୍ପର୍କୀୟ କେତେକ ଆଲୋଚନା ଓ ସମାଲୋଚନା ଗ୍ରନ୍ଥ ରଚନା କରିଛନ୍ତି। 'ମଧୁସୃଷ୍ଟି ଅମୂର୍ତ୍ତ ଦୃଷ୍ଟି' ତାଙ୍କର ଅନ୍ୟତମ ମାନ୍ୟତାପ୍ରାପ୍ତ ସମାଲୋଚନା ଗ୍ରନ୍ଥ।

ପ୍ରକାଶିତ କବିତା ସଂକଳନ: ନଈ ଆଉ ମାଛ ହଂସ ଓ ସାରସ (୧୯୭୩), ଉଚ୍ଚୈଶ୍ରବା (୧୯୮୧) ଅଗ୍ନିର ପାଦ (୧୯୮୬), ଯଯାତି (୧୯୯୧), ଅଭୟଧାମ (୧୯୯୪)।

## କମଳାକାନ୍ତ ଲେଙ୍କା (୧୯୩୪)

ତାଙ୍କ କ୍ଷୁଦ୍ର କବିତା ଗୁଡ଼ିକ ବେଶ୍ ପ୍ରଭାବଶାଳୀ ଓ ସ୍ଥିତିସ୍ଥାପକ। ତାଙ୍କ କବିତା ସ୍ୱକୀୟ ଜୀବନଚର୍ଯ୍ୟା ଓ ଜୀବନାନୁଭବର ନିଷ୍କପଟ କାବ୍ୟିକ ଉଚ୍ଚାରଣ। ଜୀବନର ନାନାବିଧ ସମସ୍ୟା ଓ ସଂକଟର ଛାୟାଲୋକରେ ତାଙ୍କ କବିତା ଉଦ୍‌ଭାସିତ। ଓଡ଼ିଶା ସାହିତ୍ୟ ଏକାଡ଼େମୀଦ୍ୱାରା ପୁରସ୍କୃତ ଏହି କବି ଏବେବି ସୃଷ୍ଟିଶୀଳ।

ପ୍ରକାଶିତ କବିତା ସଂକଳନ: ସୁନା ଫସଲ (୧୯୫୮), ପ୍ରୀତି ଓ ପ୍ରତୀତି (୧୯୬୩), ଉତ୍ତରଣ (୧୯୬୬), ସ୍ମରଣ ବିସ୍ମରଣ (୧୯୭୩), କବିତାର ମୁହଁ (୧୯୭୪), ଅନ୍ତତଃ ନିଶ୍ଚୁପ (୧୯୭୫), ନିଜ ସହ ଗୋଟେ ସାକ୍ଷାତ୍‌କାର (୧୯୭୮), ନିତ୍ୟନିୟମିତ (୧୯୭୮), ଖସିବାର ବେଳ (୧୯୮୦), ଗୀତ ଗା'ନାରେ ପକ୍ଷୀ (୧୯୮୨), ଦୁଃଖ ସହ କଥାବାର୍ତ୍ତା

(୧୯୮୭), ଚିତାଅଙ୍କା କାନ୍ଥର ଛବି (୧୯୮୭), ଚିରାୟତ (୧୯୯୧), ଉନ୍ମୋଚନ (୧୯୯୧), ପାଦେ ଆଗକୁ (୧୯୯୪)।

## ମନୋରମା ମହାପାତ୍ର (୧୯୩୪)

ଉତ୍ତର ପଚାଶର ରୋମାଣ୍ଟିକ୍ କାବ୍ୟଚେତନା କ୍ରମେ ସମାହିତ ହୋଇ ସମାଜ- ସଚେତନତା ଓ ଦାର୍ଶନିକ ମନନଶୀଳତା ଆଡ଼କୁ ଲକ୍ଷ୍ୟନିଷ୍ଠ ହୋଇଛି। ନାରୀର ସାମାଜିକ ସମସ୍ୟା ତଥା ନାରୀ ଚେତନାର ଉତ୍ତରଣ ତାଙ୍କ କବିତାରେ ବିଶେଷଭାବେ ରୂପାୟିତ। ସାଂଗୀତିକତା ଓ ଛନ୍ଦୋବଦ୍ଧ ପରିପ୍ରକାଶ ତାଙ୍କ କବିତାରେ ସୁପ୍ରେକ୍ଷ୍ୟ।

ପ୍ରକାଶିତ କବିତା ସଂକଳନ: ଜୁଆର ଯେଉଁଠି ଉଠେ (୧୯୬୦), ଅର୍ଦ୍ଧନାରୀଶ୍ବର (୧୯୯୧)।

## ନୃସିଂହ କୁମାର ରଥ (୧୯୩୫)

ପ୍ରାୟ ତିନିଦଶନ୍ଧି ଧରି ଧାରାବାହିକଭାବେ କବିତା ଲେଖିଛନ୍ତି। ତାଙ୍କ କବିତାର ଭାବଧାରା ସରଳ ଓ ପ୍ରକାଶଭଙ୍ଗୀ ସ୍ବଚ୍ଛ। ଇଂରାଜୀ ଅଧ୍ୟାପନା ଓ ପରେ ଅଧ୍ୟକ୍ଷଭାବେ ଅବସରପ୍ରାପ୍ତ। ବିଦଗ୍ଧ କବିତା ବ୍ୟତୀତ 'ଟିକି ଚଢ଼େଇର ଡ଼େଣା' ନାମରେ ତାଙ୍କର ଏକ ଶିଶୁକବିତା ସଂକଳନ ମଧ୍ୟ ପ୍ରକାଶିତ।

ପ୍ରକାଶିତ କବିତା ସଂକଳନ: ମରୁଦୂର୍ବା (୧୯୬୦), ଦୃଷ୍ଟି ଦିଗନ୍ତ (୧୯୬୩), ଛବି ଓ ଛାୟା (୧୯୬୪), ଶୂନ୍ୟତାମ୍ (୧୯୬୫), ଉତ୍କଣ୍ଠାର ମୃତ୍ୟୁ (୧୯୭୦), ସମୟ ସମୟାନ୍ତର (୧୯୮୦), ନିର୍ବାସିତର ସ୍ବର୍ଗ (୧୯୮୫)।

## ବିବେକ ଜେନା (୧୯୩୫)

ତାଙ୍କ କବିତାରେ ଖୁବ୍ ଆବେଗଦୀପ୍ତ ବୌଦ୍ଧିକ ସ୍ବରଟିଏ କିଛି ରହସ୍ୟାନୁଭବ ନେଇ କ୍ରମେ ମୁକୁଳିତ ହୋଇ ଆସୁଥିଲା ବେଳେ କବିଙ୍କର ଆକସ୍ମିକ ମୃତ୍ୟୁ ଓଡ଼ିଆ ସାହିତ୍ୟ ପାଇଁ ଶୋଚନାର ବିଷୟ ହୋଇ ରହିଗଲା।

ପ୍ରକାଶିତ କବିତା ସଂକଳନ: ପବନର ଘର (୧୯୭୧)।

## [illegible]

ଜୀବନ, ସମୟ ଓ ମୃତ୍ୟୁ ସଚେତନ କବି ଜଗନ୍ନାଥ ପ୍ରସାଦ ଦାସ ଓଡ଼ିଆ କବିତା କ୍ଷେତ୍ରରେ ଏକ ପରିଚିତ ନାମ। ଦାର୍ଶନିକ ଜିଜ୍ଞାସା ଓ ମନନଶୀଳତା ସହିତ ବାସ୍ତବ ପରିପାର୍ଶ୍ବର ମନୋଜ୍ଞ ପରିଚର୍ଯ୍ୟା ତାଙ୍କ କବିତାର ମୁଖ୍ୟ ପ୍ରତିଭାସ। କବିତା ସହିତ ସମସ୍କନ୍ଧୀ ଭାବେ ଅନେକ ଗଳ୍ପ ଓ ନାଟକ ତଥା ଐତିହାସିକ ବିବରଣୀ ପରିସ୍ଫୁଟ 'ଦେଶ କାଳ ପାତ୍ର'ର ରଚୟିତା। 'ଆହ୍ନିକ' କାବ୍ୟ ଗ୍ରନ୍ଥ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ତାଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ।

ପ୍ରକାଶିତ କବିତା ସଂକଳନ: ପ୍ରଥମ ପୁରୁଷ (୧୯୭୧), ଅନ୍ୟସବୁ ମୃତ୍ୟୁ (୧୯୭୬) ଯେ ଯାହାର ନିର୍ଜନତା (୧୯୭୯), ଅନ୍ୟଦେଶ ଭିନ୍ନ ସମୟ (୧୯୮୨), ଯାତ୍ରାର

ପ୍ରଥମ ପାଦ (୧୯୮୮), ଆହ୍ନିକ (୧୯୯୦), ସ୍ଥିର ଚିତ୍ର (୧୯୯୧), ସଚରାଚର (୧୯୯୨), ପ୍ରେମ କବିତା (୧୯୯୨), ପୂର୍ବାପର (୧୯୯୫), ସ୍ମୃତିର ସହର (୧୯୯୫)।

### ବିଭୂଦତ୍ତ ମିଶ୍ର (୧୯୩୬)

ରସସିକ୍ତ ଆବେଗ- ପ୍ରବଣ ଅନେକ ପ୍ରେମ କବିତାର ରଚୟିତା ଏହି କବି ଶତାଧିକ ସନେଟ୍ ରଚନା କରିଛନ୍ତି। ବୋଧହୁଏ କବି ମାନସିଂହଙ୍କ ପରେ ପ୍ରେମ ଓ ପ୍ରଣୟ ଆଧାରିତ ଏତେ ସଂଖ୍ୟକ ସନେଟ୍ ଆଉ କୌଣସି କବି ରଚନା କରିନାହାନ୍ତି। ତାଙ୍କ ବ୍ୟକ୍ତିଧର୍ମୀ ଉଲ୍ଲାସ ଓ ଆସକ୍ତିର ଉଚ୍ଚାରଣ 'ସୁପର୍ଣ୍ଣର ସଂଗୀତ' ବେଳେବେଳେ ଇନ୍ଦ୍ରିୟୋତ୍ତର ଭାବନାରେ ଉର୍ଦ୍ଧ୍ୱାୟିତ। ବରିଷ୍ଠ ଓଡ଼ିଆ ଅଧ୍ୟାପକ ଭାବେ ସେ ସରକାରୀ ଚାକିରୀରୁ ଅବସରପ୍ରାପ୍ତ।

ପ୍ରକାଶିତ କବିତା ସଂକଳନ: ଉର୍ବଶୀର ଚିଠି (୧୯୬୧), ହେ ସାରଥି! ରଥ ରଖ (୧୯୭୭), ଶହେଟି ସନେଟ୍ (୧୯୭୭), ବିସ୍ମୃତିର ସ୍ମୃତି (୧୯୮୧), ସୁପର୍ଣ୍ଣର ସଂଗୀତ (୧୯୮୬)।

### ବ୍ରଜନାଥ ରଥ (୧୯୩୬)

ଛନ୍ଦ କବିତା ମରିଯାଉଥିବା ସମୟରେ ବ୍ରଜନାଥ ରଥଙ୍କ କବିତା ନୂଆ ପ୍ରତିଧ୍ୱନି ଶୁଣାଏ। ରୋମାଣ୍ଟିକ୍ ବାସ୍ତବବାଦରୁ ପ୍ରଗତିବାଦ ଦେଇ କବିଙ୍କ କାବ୍ୟ ଚେତନାର ଜୟଯାତ୍ରା। ବିପ୍ଲବର ସ୍ୱର ଭିତରେ ମୁକ୍ତିର ଅନ୍ୱେଷଣ ଏବଂ 'ଲଘୁ ଶତକ' ଭିତରେ ସମାଜ ପ୍ରତି ବ୍ୟଙ୍ଗ କବିଙ୍କ ବ୍ୟତିକ୍ରମ-ପ୍ରତିଭାର ଉଜ୍ଜ୍ୱଳ ନମୁନା। କାବ୍ୟଭାଷା ସ୍ୱଚ୍ଛ, ସରଳ ଓ ହୃଦୟଗ୍ରାହୀ। ଜଣେ ଶକ୍ତିଶାଳୀ ମାନବତାବାଦୀ ବାମପନ୍ଥୀ କବିଭାବେ ସୁପରିଚିତ।

ପ୍ରକାଶିତ କବିତା ସଂକଳନ: ମରୁ ଗୋଲାପ (୧୯୬୦), ନିଜସ୍ୱ ସଂଳାପ (୧୯୬୯), ମରୁ ଗୋଲାପ ଓ ଅନ୍ୟାନ୍ୟ କବିତା (୧୯୭୨), ନିଃଶବ୍ଦ ପ୍ରତିବାଦ (୧୯୭୭), ସଭ୍ୟତାର ମୁହଁ (୧୯୭୯), ମନର ମାନଚିତ୍ର (୧୯୮୩), ହେ ମହାଜୀବନ! (୧୯୯୧), ଲଘୁ ଶତକ (୧୯୯୩)।

### ସୀତାକାନ୍ତ ମହାପାତ୍ର (୧୯୩୭)

'ଶବ୍ଦର ଆକାଶ' କବିତା ସଂକଳନ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଏବଂ ସାମଗ୍ରିକ କାବ୍ୟକୃତି ପାଇଁ ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ। କବିଙ୍କ କବିତାରେ ଲୋକ ଉପାଦାନ, ଐତିହ୍ୟ, ପଲ୍ଲୀର ଚିତ୍ର, ସାଂସ୍କୃତିକ ଚେତନା ଅନନ୍ୟଭାବେ ରୂପାୟିତ। ମନୁଷ୍ୟର ଅନ୍ତର୍ଦ୍ୱନ୍ଦ୍ୱ, ଜୀବନ ବୈଚିତ୍ର୍ୟ, ବିଚ୍ଛିନ୍ନତାବୋଧ, ସମୟ ଚେତନା ଓ ପାପବୋଧ ପରି ଜଟିଳ ମାନସିକତାର ଚିତ୍ରଣରେ ତାଙ୍କ କବିତା ବ୍ୟାପ୍ତିଭିତ୍ତିକ। ଜୀବନ ଓ ମୃତ୍ୟୁ ତଥା ପାରତ୍ରିକ ସ୍ଥିତିର ରହସ୍ୟ ଉଦ୍‌ଘାଟନରେ ତାଙ୍କ କବିତା ଏକାନ୍ତ ମର୍ମବାହୀ। ଆଧୁନିକ ଓଡ଼ିଆ କବିତାର ଅନ୍ୟତମ ଦିଗ୍‌ଦର୍ଶକ କବି।

ପ୍ରକାଶିତ କବିତା ସଂକଳନ: ଦୀପ୍ତି ଓ ଦ୍ୟୁତି (୧୯୬୩), ଅଷ୍ଟପଦୀ (୧୯୬୭), ଶବ୍ଦର ଆକାଶ (୧୯୭୧), ସମୁଦ୍ର (୧୯୭୭), ଚିତ୍ରନଦୀ (୧୯୭୯), ଆରଦୃଶ୍ୟ (୧୯୮୧), ସମୟର ଶେଷ ନାମ (୧୯୮୪), କାହାକୁ ପୁଛିବା କୁହ (୧୯୮୭),

ତୁ କି ଜାଣୁ (୧୯୯୦), ଫେରି ଆସିବାର ବେଳ (୧୯୯୧), ବର୍ଷା ସକାଳ (୧୯୯୩), ସୀତାକାନ୍ତଙ୍କ ଶ୍ରେଷ୍ଠ କବିତା (୧୯୯୨), ବର୍ଷା ସକାଳ (୧୯୯୩)।

## ଦୀପକ ମିଶ୍ର (୧୯୩୭)

ଉତ୍ତର ଷାଠିଏର ଅନ୍ୟତମ ବିଶିଷ୍ଟ ପ୍ରୟୋଗବାଦୀ କବି। ତାଙ୍କ କବିତା ବୌଦ୍ଧିକତା, ଜଟିଳ ଭାବାନୁଷଙ୍ଗ ଓ ଅପ୍ରଚଳିତ କାବ୍ୟଭାଷା ପ୍ରୟୋଗରେ ଭାବବାହୀ ତଥା ଅତିବାସ୍ତବବାଦୀ, ସ୍ଥିତିବାଦୀ ଭାବଧାରାରେ ସମୃଦ୍ଧ। ଜଟିଳ ଜୀବନ ଜିଜ୍ଞାସା, ମଗ୍ନ ବ୍ୟକ୍ତିସତ୍ତା ଓ ନିଃସଙ୍ଗତାବୋଧ ତାଙ୍କ କବିତାକୁ ଆପାତଃ ଦୁର୍ବୋଧ କରିଥିଲେବି କବି ଅନ୍ୟତମ ବୁଦ୍ଧିବାଦୀ କାବ୍ୟ ପ୍ରତିଭା ଭାବେ ସ୍ୱୀକୃତ। ଜୀବନ, ପ୍ରେମ, ମୃତ୍ୟୁର ବ୍ୟକ୍ତିଗତ ଭାବ ଭଉଁରୀରେ ଭ୍ରାମ୍ୟମାଣ କବି ପୀଡ଼ିତ ପରିପାର୍ଶ୍ୱ ପ୍ରତି ଉଦାସୀନ ନୁହଁନ୍ତି। ଓଡ଼ିଶା ସାହିତ୍ୟ ଏକାଡେ଼ମୀ ପୁରସ୍କାର ସମେତ ବହୁ ପୁରସ୍କାର ଓ ସ୍ୱୀକୃତିର ଅଧିକାରୀ।

ପ୍ରକାଶିତ କବିତା ସଂକଳନ: ଅସମାପିକା (୧୯୬୧), ଦୀପକ ମିଶ୍ରଙ୍କ କେତୋଟି କବିତା (୧୯୬୩), ଅନୁଷ୍ଟୁପ୍ (୧୯୬୮), ନିଷିଦ୍ଧ ହ୍ରଦ (୧୯୭୦), ନିର୍ଜନ ନକ୍ଷତ୍ର (୧୯୭୧), ମଧ୍ୟାହ୍ନର ଛାଇ (୧୯୭୪), ବୃତ୍ତ (୧୯୭୫), ସପ୍ତମ ପୃଥିବୀ (୧୯୭୭), ଅରଣା ମଇଁଷି (୧୯୭୯), ଶୂନ୍ୟତାର ଶୋଷ (୧୯୮୧), କପଟ ସୂର୍ଯ୍ୟାସ୍ତ (୧୯୮୪), ଧୂଳିର ସିଂହାସନ (୧୯୮୯), ନିରବଧି ନାଭିଶ୍ୱାସ (୧୯୯୨), ଗନ୍ଧ (୧୯୯୪)।

## ସୌରୀନ୍ଦ୍ର ବାରିକ (୧୯୩୮)

'ସାମାନ୍ୟକଥନ' କାବ୍ୟଗ୍ରନ୍ଥ ଲାଗି ଓଡ଼ିଶା ସାହିତ୍ୟ ଏକାଡେ଼ମୀ ଏବଂ 'ଆକାଶପରି ନିବିଡ଼' କାବ୍ୟଗ୍ରନ୍ଥ ଲାଗି କେନ୍ଦ୍ର ସାହିତ୍ୟ ଏକାଡେ଼ମୀ ପୁରସ୍କାର ପ୍ରାପ୍ତ। ପ୍ରୟୋଗବାଦୀ ଓଡ଼ିଆ କବିତାର ଅନ୍ୟତମ ଅନୁସାରକ। ପ୍ରେମ, ସୌନ୍ଦର୍ଯ୍ୟ, ଆତ୍ମୀୟ ଅନୁରାଗ, ସର୍ବୋପରି ଜୀବନର ବହୁବିଧ ଅନୁଭୂତିକୁ ସେ ଚମତ୍କାର କାବ୍ୟରୂପ ଦେଇଥାନ୍ତି। ମିଥ୍‌ର ଭିନ୍ନଧର୍ମୀ ପ୍ରୟୋଗ, ବସ୍ତୁକୁ ବସ୍ତୁତ୍ୱରୁ ମୁକ୍ତି ଦେବାର ପ୍ରୟାସ ('ଆମେ ଦୁହେଁ'), ଜୀବନ ପ୍ରତି ଏକ ନିବିଡ଼ ଶ୍ରଦ୍ଧା ପୋଷଣ ତାଙ୍କ କବିତାର ଦୃଶ୍ୟମାନ ବୈଶିଷ୍ଟ୍ୟ।

ପ୍ରକାଶିତ କବିତା ସଂକଳନ: ସାମାନ୍ୟ କଥନ (୧୯୭୫) ଉପ ଭାରତ (୧୯୮୧), ଆକାଶ ପରି ନିବିଡ଼ (୧୯୮୫), ଗୁଣୁଗୁଣୁ ଚିତ୍ରପଟ (୧୯୮୬), ଲୁହଠୁଁ ବି ଅନ୍ତରଙ୍ଗ (୧୯୮୯), ଅନୁଭାରତ (୧୯୯୦), ଆମେ ଦୁହେଁ (୧୯୯୧)।

## ବ୍ରହ୍ମାନନ୍ଦ ଦାସ (୧୯୩୯)

କବି ବ୍ରହ୍ମାନନ୍ଦ ଦାସ ସମକାଳୀନ କାବ୍ୟଜଗତରେ ଏକ ଭିନ୍ନ ଭାବଧାରାର ପ୍ରବର୍ତ୍ତକ। ଜୀବନର ଓ ପରିପାର୍ଶ୍ୱର ଅତି ସାଧାରଣ ଘଟଣା ଓ ଦୃଶ୍ୟକୁ ସେ କବିତାର ଆତ୍ମିକ ଉପାଦାନ ଭାବରେ ଗ୍ରହଣ କରି ଅତି ଆଟୋପହୀନ ଭାଷାରେ ତାର କାବ୍ୟରୂପ ପ୍ରଦାନ କରନ୍ତି। ତେଣୁ ତାଙ୍କ କବିତାର ଅବବୋଧରେ ଅନ୍ତରାୟ ସୃଷ୍ଟି ହୁଏନାହିଁ।

ପ୍ରକାଶିତ କବିତା ସଂକଳନ: ବର୍ଷା (୧୯୬୮), ଅବିଶ୍ୱାସ (୧୯୭୨), ଧରଣୀ ଓ ଝରଣା (୧୯୭୩), ଝର୍କା ବାହାରେ (୧୯୯୨), ତାଳଗଛ (୧୯୯୩), ଜୀବନଯେମିତି (୧୯୯୪), ଅନ୍ତରଙ୍ଗ ପୃଥିବୀ (୧୯୯୪)। ଅନୁବାଦ: ନୂତନ ପୃଥିବୀର କବିତା (୧୯୮୯)।

### ଧୂନ୍ ଖୁଣ୍ଟିଆ (୧୯୩୯)

ମୁଖ୍ୟତଃ ରୋମାଣ୍ଟିକ ଚେତନାର କବି। ପ୍ରକୃତି ଓ ଅସୀମ ପ୍ରତି ବ୍ୟାକୁଳତା ତାଙ୍କର ବହୁ କବିତାରେ ପ୍ରତିଫଳିତ।

ପ୍ରକାଶିତ କବିତା ସଂକଳନ: ପ୍ରୀତିର ଋତୁ ଇତ୍ୟାଦି (୧୯୭୮), ଆକୁଳ ଅରଣ୍ୟ (୧୯୭୯), ବିନ୍ଦୁ ବିସର୍ଗ (୧୯୯୧), ପୀଡ଼ିତ ପ୍ରଜାପତି (୧୯୯୧)।

### ସୌଭାଗ୍ୟ କୁମାର ମିଶ୍ର (୧୯୪୦)

ପ୍ରୟୋଗବାଦୀ କାବ୍ୟଧାରାର ଅନ୍ୟତମ ଯଶସ୍ୱୀ କବି- କାବ୍ୟ ରଚନାର ଆଦ୍ୟକାଳର ରୋମାଣ୍ଟିକ୍ ଦୃଷ୍ଟିଭଙ୍ଗୀ କ୍ରମେ ତିରୋହିତ ହୋଇ ଆଣ୍ଟିରୋମାଣ୍ଟିକ୍/ ଅତିବାସ୍ତବବାଦୀ ଚେତନାଶ୍ରିତ- ଅପ୍ରଚଳିତ ପ୍ରତୀକ ଓ ରୂପକଳ୍ପ ପ୍ରୟୋଗରେ କୁଶଳୀ, ନିଗୂଢ଼ ଭାବବାଦୀ କାବ୍ୟଶିଳ୍ପୀ- ନିଛକ ବ୍ୟଞ୍ଜନାଧର୍ମୀ ଭାଷା ଓ ଗଦ୍ୟଶୈଳୀର ଅନ୍ୟତମ ପ୍ରବର୍ତ୍ତକ- କାବ୍ୟ ଉଚ୍ଚାରଣରେ ନିହିତ ଅର୍ଥବୋଧ ପ୍ରତି ଅଧିକ ଧ୍ୟାନଶୀଳ ବୌଦ୍ଧିକ କାବ୍ୟସ୍ରଷ୍ଟା- ଓଡ଼ିଶା ଓ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାରପ୍ରାପ୍ତ।

ପ୍ରକାଶିତ କବିତା ସଂକଳନ: ଆତ୍ମନେପଦୀ (୧୯୬୫), ମଧ୍ୟପଦଲୋପୀ (୧୯୭୦), ନଈ ପହଁରା (୧୯୭୩), ଅନ୍ଧ ମହୁମାଛି (୧୯୭୭), ବଜ୍ରଯାନ (୧୯୮୧), ଦ୍ୱା ସୁପର୍ଣ୍ଣା (୧୯୮୪), ମଣିକର୍ଣ୍ଣିକା (୧୯୯୦), ଅନ୍ୟତ୍ର (୧୯୯୪)।

### ନିତ୍ୟାନନ୍ଦ ନାୟକ (୧୯୪୦)

ଆଧୁନିକ ଜୀବନର ହତାଶା, ନିଃସଙ୍ଗତାବୋଧ, ପ୍ରକୃତିର ଅପସୃୟମାଣ ବିଭବ ପ୍ରତି ଆତ୍ମୀୟତା ତାଙ୍କ କବିତାରେ ବିଶେଷଭାବେ ପରିଲକ୍ଷିତ। ଜୀବନର ଧୂସର ମଳିନ ସ୍ଥିତିରୁ ଚେତନାକୁ ଉତ୍ତୀର୍ଣ୍ଣ କରାଇବା ପାଇଁ ତାଙ୍କ କବିତାରେ ଏକ ବ୍ୟାକୁଳତାର ସ୍ୱର ଉପଲବ୍ଧ। 'ଭୋର ଆକାଶ' କବିତା ଗ୍ରନ୍ଥ ଲାଗି ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ।

ପ୍ରକାଶିତ କବିତା ସଂକଳନ: ବିଦୀର୍ଣ୍ଣ ମରାଳ (୧୯୭୬), ତ୍ରସ୍ତ ପଦ୍ମାସନ (୧୯୮୩), ଭୋର ଆକାଶ (୧୯୮୯)।

### ଜୟକୃଷ୍ଣ ବାରିକ (୧୯୪୦)

ଆଧୁନିକ ଜୀବନର ଦୁଃଖ, ନିଃସଙ୍ଗତାବୋଧ, ପ୍ରେମ ଆଦି ଭାବାନୁଭୂତିକୁ ଉପଜୀବ୍ୟ କରି ତାଙ୍କ କାବ୍ୟ- ବୃତ୍ତ ସଂଗଠିତ। ତାଙ୍କ ଗଦ୍ୟଛନ୍ଦ କଥିତ ଭାଷାର ଅଧିକ ନିକଟବର୍ତ୍ତୀ। କାବ୍ୟ ଭାବନା ବେଳେବେଳେ ଅସ୍ପଷ୍ଟ ହେଲେବି ସାମଗ୍ରିକଭାବେ ଆବେଦନଶୀଳ।

ପ୍ରକାଶିତ କବିତା ସଂକଳନ: ଜୀବନ ତୀର୍ଥ, ବିଭକ୍ତ ବଳୟ (୧୯୭୮), ହାତରେ କିଛି ନାଇଁ (୧୯୮୧), ବ୍ୟର୍ଥ ଅପାର୍ଥ (୧୯୮୯), ସବୁ ସ୍ୱପ୍ନ ସବୁ ଅପମାନ (୧୯୯୩)।

### ବଂଶୀଧର ଷଡ଼ଙ୍ଗୀ (୧୯୪୦)

ଆଧୁନିକ କବିତାରେ ପ୍ରତିଫଳିତ ବିଭିନ୍ନ ଜଟିଳ ଭାବାନୁଭୂତି, ମୃତ୍ୟୁ ଭାବନା, ମିଥ୍, ରହସ୍ୟବୋଧ, ସମୟ ଚେତନା ଆଦିର ସାର୍ଥକ ପ୍ରୟୋଗ ତାଙ୍କ କବିତାରେ ପରିଲକ୍ଷିତ।

ଆଧୁନିକ ଓଡ଼ିଆ କବିତାର ଅନ୍ୟତମ ସଫଳ ସ୍ୱର- 'ଶବରୀ ଚର୍ଯ୍ୟା' ସଂକଳନଲାଗି ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ।

ପ୍ରକାଶିତ କବିତା ସଂକଳନ: ସମୟ ଅସମୟ (୧୯୭୭), ଛବିର ଅଶ୍ୱାରୋହୀ (୧୯୮୦), ଶବରୀ ଚର୍ଯ୍ୟା (୧୯୮୯), ଛାୟା ଦର୍ଶନ (୧୯୯୪)।

## ହରିହର ମିଶ୍ର (୧୯୪୧)

ସାଂପ୍ରତିକ କବିତାର ଜଣେ ବିଶିଷ୍ଟ ପ୍ରୟୋଗବାଦୀ ସ୍ରଷ୍ଟା- ତାଙ୍କ କବିତାରେ ଜୀବନର ରହସ୍ୟାନୁଭୂତି ଓ ଜଗନ୍ନାଥଙ୍କ ବହୁବିଧ ମହିମା ଦାର୍ଶନିକ ଭାବନାରେ ରୂପାନ୍ତରିତ- ବିଶିଷ୍ଟ ପ୍ରତୀକବାଦୀ ଭାବ ବିଭୋର କବି- କବିତାରେ ଅତିରିକ୍ତ ପରୀକ୍ଷାବାଦିତା ଓ ଜଟିଳ ଭାବାନୁଙ୍ଗ ଭାବ-ଆବେଦନରେ ବାଧା ସୃଷ୍ଟି କରୁଥିଲେ ବି କବିତାର ବୌଦ୍ଧିକ ଉଚ୍ଚତା ସହିତ ସାଲିସ୍ କରିବାକୁ କବି ଅପ୍ରସ୍ତୁତ। କବିତା ବ୍ୟତୀତ ନାଟକ ରଚନା ଓ ନିର୍ଦ୍ଦେଶନାରେ କବିଙ୍କ କୃତିତ୍ୱ ଉଲ୍ଲେଖଯୋଗ୍ୟ। ନାଟକପାଇଁ କବି ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ।

ପ୍ରକାଶିତ କବିତା ସଂକଳନ: ଶଂଖନାଭି (୧୯୭୩), ଚନ୍ଦ୍ର ବିମ୍ବ (୧୯୭୩), ଲାଲକଣ୍ଢର ତପସ୍ୟା (୧୯୭୭), ଅକ୍ଷମ ଦେବତା (୧୯୭୮), ଚାହାଣି ମଣ୍ଡପ (୧୯୮୭), ସ୍ୱପ୍ନ ବିନିମୟ (୧୯୯୩), ଭିତିରି ଚନ୍ଦନ (୧୯୯୪), ଦର୍ପଣ ଶିଳା (୧୯୯୫), ଶବ୍ଦ ଏକା ଏକା ଏକତ୍ର (୧୯୯୫)।

## ପ୍ରସନ୍ନ କୁମାର ମିଶ୍ର (୧୯୪୧)

ରୋମାଣ୍ଟିକ ସୌନ୍ଦର୍ଯ୍ୟାନୁଭୂତି, ମାନବବାଦୀ ସମାଜନିଷ୍ଠ ଚିନ୍ତାଧାରା ଏବଂ ବିଦଗ୍ଧ ପ୍ରେମ ଚେତନାରେ ତାଙ୍କ କାବ୍ୟ ଜଗତ ସମୃଦ୍ଧ। ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ। ଉପନ୍ୟାସ, ସମାଲୋଚନା ଓ ଶିଶୁସାହିତ୍ୟ ରଚନାରେ କୁଶଳୀ ସୃଷ୍ଟିଶୀଳ ସାହିତ୍ୟିକ।

ପ୍ରକାଶିତ କବିତା ସଂକଳନ: ରତ୍ନଦ୍ୱୀପର ମାଟି (୧୯୬୧), ବସନ୍ତର ସ୍କେଚ୍ (୧୯୬୮), ଅଦୃଶ୍ୟ ସଂଗମ (୧୯୭୬), ସାରା ଆକାଶରେ ତା'ର ଡାକ (୧୯୭୯), ଆ ପକ୍ଷୀ ଫେରିଆ (୧୯୮୩), ଟ୍ରକ୍ ଡାଲାରେ ସନାତନ (୧୯୯୧), ଚାଲିବାର ଗୀତ (୧୯୯୨)।

## କନକ ଦେବୀ (୧୯୪୧)

ନାରୀ ପ୍ରାଣର ରୂପାତୀତ ଅଜସ୍ର ସୁକୁମାର ଭାବାନୁଭୂତି ତାଙ୍କ କବିତାରେ ଉପଲବ୍ଧ। ସୌନ୍ଦର୍ଯ୍ୟ ଓ ରୂପ ଅନ୍ତରାଳରେ ଏକ ଅସୀମ ଜିଜ୍ଞାସା ଅଧିକାଂଶ କବିତାର ଭାବବସ୍ତୁ। ଗଳ୍ପ ଓ ଉପନ୍ୟାସ ରଚନା ଓ ଅନୁବାଦରେ ତାଙ୍କ ଲେଖନୀର ପରାକାଷ୍ଠା ପ୍ରମାଣିତ।

ପ୍ରକାଶିତ କବିତା ସଂକଳନ: ବନ ହଳଦୀ (୧୯୭୧), ବର୍ଷାର ବଳାକା (୧୯୮୮)।

## ନିତ୍ୟାନନ୍ଦ ପତି (୧୯୪୧- ୧୯୮୯)

ଆଚରଣରେ ଖାଣ୍ଟି କବି ସ୍ୱର୍ଗତ ପତିଙ୍କ କବିତାର ଉଚ୍ଚାରଣ ନିଜସ୍ୱ ଜୀବନଧାରା ଠାରୁ ତଫାତ୍ ନଥିଲା। ପ୍ରେମ, ପ୍ରଣୟ ଓ ଜୀବନର ସେ ଥିଲେ ବାସ୍ତବବାଦୀ ରୂପକାର; ଯଦିଓ ଅନେକ ସମୟରେ ତାଙ୍କ ଚିତ୍ରଧର୍ମୀ କବିତାଗୁଡ଼ିକ ରୋମାଣ୍ଟିକ୍ ପ୍ରତୀତ ହେଉଥିଲା।

ତାଙ୍କ କବିତାର ପ୍ରତୀକ ଓ ରୂପକଳ୍ପ ଥିଲା ଖୁବ୍ ଭାବଧର୍ମୀ। କବିଙ୍କ ଅକାଳ ବିୟୋଗ ଓଡ଼ିଆ ସାହିତ୍ୟ ପାଇଁ ଏକ ଦାରୁଣ ଦୁଃସମ୍ବାଦ।

ପ୍ରକାଶିତ କବିତା ସଂକଳନ: ନାବିକର ନିଃଶ୍ୱାସ (୧୯୮୧), ନିସର୍ଗନିଳୟ (୧୯୮୩), ମୌନ ମୁହୂର୍ତ୍ତ (୧୯୮୪), ଛାଇ ଆଶ୍ଳେଷ (୧୯୮୯)।

## ସରୋଜ ରଂଜନ ମହାନ୍ତି (୧୯୪୨)

ରୋମାଣ୍ଟିକ ବିଷାଦବୋଧ ଓ ରୂପ ପିପାସାର ସ୍ୱର ତାଙ୍କ କବିତାରେ ପ୍ରମୁଖ ଭାବେ ପ୍ରତିଫଳିତ। ସାଂପ୍ରତିକ ସମୟର ଦୁଃସ୍ଥିତି ଓ କାରୁଣ୍ୟକୁ ପ୍ରକାଶ କରିବାରେ ତାଙ୍କ ସ୍ୱର ସମାଜ ସଚେତନ ଓ ମାନବବାଦୀ। ସୁପ୍ରତିଷ୍ଠିତ ପତ୍ରିକା 'ଝଙ୍କାର'ର ସମ୍ପାଦନା ମଣ୍ଡଳୀର ଅନ୍ୟତମ ସମ୍ପାଦକ ଭାବେ କାର୍ଯ୍ୟରତ।

ପ୍ରକାଶିତ କବିତା ସଂକଳନ: କାଗଜ ଡଙ୍ଗାର ଶୋକ (୧୯୭୭), ବାଇଗେଣୀ ଋତୁ (୧୯୮୧), ଫୁଲ ଫୁଟାଇବା ମନା (୧୯୯୨)।

## ପ୍ରହରାଜ ସତ୍ୟନାରାୟଣ ନନ୍ଦ (୧୯୪୨)

ଦାର୍ଶନିକ ଚେତନା, ସୌନ୍ଦର୍ଯ୍ୟବୋଧ ଓ ରୋମାଣ୍ଟିକ ଚେତନାର ଅନୁସାରକ କବି ଶ୍ରୀ ନନ୍ଦ କବିତାରେ ବହୁବିଧ ପରୀକ୍ଷାର ପକ୍ଷପାତୀ। ଦାର୍ଶନିକ ଭାବାପନ୍ନ ରଚନା 'ସନେଟ୍ ସା' ତାଙ୍କର ଏକ ଉଲ୍ଲେଖନୀୟ କୃତି। ତାଙ୍କ କବିତାର ଶବ୍ଦଗଠନ ଓ ଛନ୍ଦ ଯୋଜନାରେ ଏକ ବ୍ୟତିକ୍ରମମୂଳକ ନିଜସ୍ୱ ଶୈଳୀ ଲକ୍ଷଣୀୟ।

ପ୍ରକାଶିତ କବିତା ସଂକଳନ: ନୀଳ ହଂସର ଜ୍ୱାଳା (୧୯୬୭), ଅଧଃପତନର ଛନ୍ଦ (୧୯୭୧), ଶବସଂଗମ ଓ ଅନ୍ୟାନ୍ୟ କବିତା (୧୯୭୬), ଜୀଅନ୍ତା ଶାଳଗ୍ରାମ (୧୯୭୬), ସନେଟ୍ ସା (୧୯୮୦), ସପ୍ତଦ୍ୱୀପା ବସୁନ୍ଧରା (୧୯୮୪), ହିରଣ୍ମୟେନ ସବିତା ରଥେନ (୧୯୯୧), ହିରଣ୍ମୟେନ ପାତ୍ରେଣ (୧୯୯୧), ବର୍ଷାର ପାଦରେ ନୂପୁର (୧୯୯୨), ହାତରେ ମଶାଲଧରି ପାହାଡ଼କୁ ଉଠୁଥିବା ଲୋକ (୧୯୯୪)।

## ଲକ୍ଷ୍ମୀନାରାୟଣ ମହାପାତ୍ର (୧୯୪୨- ୧୯୯୬)

ଆଧ୍ୟାତ୍ମିକ ଭାବଚେତନା ଏବଂ ଅତୀନ୍ଦ୍ରିୟ ଭାବାନୁଭୂତି ପାଇଁ ନିରନ୍ତର ପ୍ରୟାସ ତାଙ୍କ କାବ୍ୟ ଧାରାର ପ୍ରମୁଖ ଦିଗ। କବିତାପାଇଁ ଜେନ୍ହେରୁ ପୁରସ୍କାର ଓ ମାଇକେଲ ମଧୁସୂଦନ ଦତ୍ତ ପୁରସ୍କାର ପ୍ରାପ୍ତ। ସେ ଇଂରାଜୀ ସାହିତ୍ୟ ପତ୍ରିକା 'ପୋଏଟ୍ରି ଟାଇମ୍‌ସ'ର ସମ୍ପାଦନା କରୁଥିଲେ।

ପ୍ରକାଶିତ କବିତା ସଂକଳନ: ସ୍ଥିତି ଗୋଟିଏ ଆତ୍ମାର, ଅନ୍ୟ ଦ୍ୱୀପ (୧୯୭୩), ରତ ଓ ଅନ୍ୟାନ୍ୟ କବିତା (୧୯୭୭), ତାର ସପ୍ତକ (୧୯୭୮), ଭୂମା, ଏକାକୀ ନାବିକ (୧୯୮୦), ଦୁଇଗୋଟି ସାମୁଦ୍ରିକ ପକ୍ଷୀ (୧୯୮୬), ଛାୟାସୂର୍ଯ୍ୟ, ପୃଥିବୀ ହେ ମୋର ପୃଥିବୀ।

### ପ୍ରମୋଦ କୁମାର ମହାନ୍ତି (୧୯୪୨)
ଦୃଶ୍ୟମାନ ଜଗତ ଭିତରୁ ଏକ ଭିନ୍ନ ଜଗତକୁ ଚାଲିଯିବାର ଅଭିଳାଷ, ଗ୍ରାମୀଣ ଜୀବନ ଓ ସୌନ୍ଦର୍ଯ୍ୟ ପ୍ରତି ଆକୁଳତା, ସର୍ବୋପରି ଏକ ଆଧ୍ୟାତ୍ମିକ ଉପଲବ୍ଧି ଦିଗରେ ନିରନ୍ତର ପ୍ରୟାସ ତାଙ୍କ କବିତାର ଉଲ୍ଲେଖନୀୟ ଦିଗ। ଠିକ୍ ବିଷାଦ ନୁହେଁ, କିନ୍ତୁ ଏକ ନାନ୍ଦନିକ କାରୁଣ୍ୟର ସ୍ୱର ତାଙ୍କ କବିତାର ଅନ୍ତରାଳରୁ ଶୁଭିଯାଏ। ଗ୍ରାମ୍ୟ ଓ ଶାଳୀନ- ଉଭୟର ସଂଯୋଗରେ ତାଙ୍କ କାବ୍ୟଭାଷା ମାଧୁର୍ଯ୍ୟମୟ।

ପ୍ରକାଶିତ କବିତା ସଂକଳନ: କ୍ରମଶଃ (୧୯୬୭), ଦେବୀପାଦ (୧୯୮୧), ଅକାତକାତ (୧୯୯୫)।

### ଦିଲୀପ ଦାସ (୧୯୪୨)
ଏକାନ୍ତ କବି ଭାବାପନ୍ନ ଏହି ସ୍ରଷ୍ଟାଙ୍କ ଲେଖନୀରୁ ଉତୁରିଥିବା କବିତା ସଂଖ୍ୟା ଅଧିକ ନ ହେଲେ ବି ତାଙ୍କ କବିତାର ରୋମାଣ୍ଟିକ୍ ଦୃଷ୍ଟିବଳୟ କ୍ରମେ ବାସ୍ତବତାର ସୀମା ଛୁଇଁ ନ ଛୁଇଁଣୁ ଆଧିଭୌତିକତା ଆଡ଼କୁ ହାତ ବଢ଼େଇ ରଖେ।

ପ୍ରକାଶିତ କବିତା ସଂକଳନ: ବିଲୁପ୍ତ ସାମ୍ରାଜ୍ୟ (୧୯୮୦), ପକ୍ଷୀଟିଏ ବସିଚି ଡାଳରେ ଛାଇ ତାର ପୋଖରୀ ଜଳରେ (୧୯୮୧)।

### ନିରଞ୍ଜନ ପାଢ଼ୀ (୧୯୪୩)
ଆଧୁନିକ ଜୀବନର ବିଷାଦବୋଧ, ମୃତ୍ୟୁଭାବନା, ପାରତ୍ରିକ ଚେତନା ତାଙ୍କ କବିତାମାନଙ୍କରେ ପ୍ରତିଫଳିତ ହୋଇଛି। ସବୁ ଦୁଃଖ, ଶ୍ଳେଷ, ଓ ଘୃଣା ମଧ୍ୟରେ ତାଙ୍କ କବିତାରେ ପ୍ରେମ ଓ ପୁଣ୍ୟର ପବିତ୍ର ସ୍ୱର ଶୁଣିବାକୁ ମିଳେ।

ପ୍ରକାଶିତ କବିତା ସଂକଳନ: ଶୂନ୍ୟ ନୀରବତା (୧୯୮୮), ମୁଁ ଯଦି ହଜିଯାଏ (୧୯୮୯) କଫିନ୍‌ର ସ୍ୱର (୧୯୯୦), କଳାହାଣ୍ଡିର କାବ୍ୟ (୧୯୯୩)।

### ଫନୀ ମହାନ୍ତି (୧୯୪୪)
ଅନାମ- ଆଧ୍ୟାତ୍ମିକ ଚେତନା, ପ୍ରେମ - ପ୍ରଣୟର ମୁଗ୍ଧ ବିଷାଦ- ଭାବ ତଥା ସାଂପ୍ରତିକ ସମୟର ଦୁଃସ୍ଥିତିର ଚିତ୍ର ତାଙ୍କ କବିତାରେ ବିଶେଷ ଭାବେ ପରିଲକ୍ଷିତ। ସାଂପ୍ରତିକ ଓଡ଼ିଆ କବିତାରେ ମିଥ୍‌ର ଯେଉଁ ବିପୁଳ ଉପଯୋଗ ହେଉଛି, କବିଙ୍କ 'ବିଷାଦ ଯୋଗ' ତାହାର ଚମତ୍କାର କାବ୍ୟିକ ପ୍ରତିଶ୍ରୁତି ବହନ କରେ। କବିତା ପାଇଁ 'ଉତ୍କଳ ସମ୍ମାନ' ପୁରସ୍କାର ପ୍ରାପ୍ତ।

ପ୍ରକାଶିତ କବିତା ସଂକଳନ: ମାନଚିତ୍ର (୧୯୭୩), ସ୍ୱୟଂବର (୧୯୮୧), ବିଦଗ୍ଧ ହୃଦୟ (୧୯୮୨), ପ୍ରିୟତମା (୧୯୮୮), ମାୟାଦର୍ପଣ (୧୯୯୦), ରୁଚିର ନଗର (୧୯୯୦), ରୁବିପାଇଁ କେତୋଟି କବିତା (୧୯୯୦), ବିଷାଦ ଯୋଗ (୧୯୯୨)।

### ରାଜେନ୍ଦ୍ର କିଶୋର ପଣ୍ଡା (୧୯୪୪)
ଏଯାବତ୍ ପ୍ରଭୂତ ସିଦ୍ଧିଲାଭ କରିଥିବା ଏହି କବି ସାଂପ୍ରତିକ କାବ୍ୟ କବିତାରେ ବହୁ ଆଙ୍ଗିକ ଓ ଆତ୍ମିକ ପରୀକ୍ଷା ଦେଇ 'ଅନ୍ୟା'ରେ ଜୀବନ, ପ୍ରେମ୍, ମୃତ୍ୟୁ ଓ ମୃତ୍ୟୋତ୍ତର

ଜଗତର ବିପୁଳ ଭାବାଲୋକରେ ବିଚରଣଶୀଳ- ସମକାଳୀନ ଜୀବନ ଜିଜ୍ଞାସା, ସାମାଜିକ ବିରୋଧାଭାସ ଓ ଜଟିଳ ମାନସିକତାର ବୌଦ୍ଧିକ ରୂପକାର- ଅପ୍ରଚଳିତ କ୍ଲିଷ୍ଟ ଓ ଦୀପ୍ତ ଶବ୍ଦାବଳୀ ତାଙ୍କ କବିତାକୁ ବେଳେବେଳେ ଦୁର୍ବୋଧ କରିଥିଲେ ବି ଆଙ୍ଗିକରେ ବହୁ ନୂତନ ପରୀକ୍ଷା ଓ କାବ୍ୟ ଭାଷାରେ ନୂତନ ପ୍ରୟୋଗ ତାଙ୍କ କବିତାର ବିଶେଷତ୍ୱ। ପ୍ରତୀକ ଓ ଲୋକମିଥ୍ ପ୍ରୟୋଗରେ ତାଙ୍କ କବିତାର ବିଭୂତି ସୁପ୍ରେକ୍ଷ।

'ଶୈଳକଳ୍ପ' ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଓ ସାମଗ୍ରିକ କାବ୍ୟସାଧନା ପାଇଁ 'ଶାରଳା ପୁରସ୍କାର' (ପ୍ରତ୍ୟାଖ୍ୟାତ)ରେ ସମ୍ମାନିତ।

ପ୍ରକାଶିତ କବିତା ସଂକଳନ: ଗୌଣ ଦେବତା (୧୯୭୨), ଶତଦ୍ରୁ ଅନେକ (୧୯୭୭), ଘୁଣାକ୍ଷର (୧୯୭୭), ଅନବତାର ଓ ଅନ୍ୟଅନ୍ୟ (୧୯୭୭), ନିଜପାଇଁ ନାନାବାୟା (୧୯୭୭), ଚୌକାଠରେ ଚିରକାଳ (୧୯୮୧), ଶୈଳକଳ୍ପ (୧୯୮୨), ଅନ୍ୟା (୧୯୮୮), ବହୁବ୍ରିହୀ (୧୯୯୨)।

## ବିଜୟିନୀ ଦାସ (୧୯୪୪)

ପ୍ରେମ, ବିରହ, ମାତୃତ୍ୱ ଇତ୍ୟାଦି ନେଇ ନାରୀ ମନର ବହୁ କୋମଳ ଉପଲବ୍ଧି ତଥା ପରମ ସତ୍ତାକୁ ଖୋଜିବାର ଆକୁଳତାରେ ତାଙ୍କ କବିତା ସମୃଦ୍ଧ। ନାଟକ, ଗଳ୍ପ ଓ ଉପନ୍ୟାସ ରଚନା କ୍ଷେତ୍ରରେ ମଧ କୃତିତ୍ୱ ପ୍ରକଟିତ। ଉପନ୍ୟାସ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ। ସାହିତ୍ୟ ପତ୍ରିକା 'ଜୀବନରଙ୍ଗ'ର ସମ୍ପାଦିକା।

ପ୍ରକାଶିତ କବିତା ସଂକଳନ: ମଧରାତ୍ରିର କବିତା (୧୯୭୨), ସୂର୍ଯ୍ୟୋଦୟ (୧୯୮୩), ଭଙ୍ଗା ଆଇନା (୧୯୮୮)।

## ହରପ୍ରସାଦ ଦାସ (୧୯୪୫)

ଭାବର ଜଟିଳତା, ଇଂଗିତର ସୂକ୍ଷ୍ମତା ଓ ଆଙ୍ଗିକର ସାଙ୍କେତିକତା ମଧ୍ୟରେ କବି ହରପ୍ରସାଦଙ୍କ କବିତାର ଭାବବିନ୍ଦୁରେ ପହଞ୍ଚିବା କଠିନ ହେଲେ ବି ଜଣେ ବୌଦ୍ଧିକ ଓ ଦାର୍ଶନିକ ମୌଳିକ କାବ୍ୟସ୍ରଷ୍ଟା ଭାବେ କବି ସ୍ୱୀକୃତ। ଶାଣିତ ବିମ୍ବଯୋଜନା ଓ ଖଣ୍ଡ ବାକ୍ୟର ପଙ୍କ୍ତିମାଳା ମଧ୍ୟରେ ତାଙ୍କ କବିତାର ନିହିତାର୍ଥରେ ପହଞ୍ଚିବା ଅନେକ ସମୟରେ ଆୟାସସାଧ ହେଲେବି ତାଙ୍କ କବିତାର କତିପୟ ପଙ୍କ୍ତି ଚମତ୍କାର ଅର୍ଥପ୍ରତୀତିରେ ପାଠକକୁ ମୁଗ୍ଧ କରିଦିଏ। ଏହି କବି କବିତାର ଭାଷ୍ୟ ନିର୍ମାଣ ଓ ତର୍ଜମାରେ ଅପୂର୍ବ ମାନସିକ ଓ ବୌଦ୍ଧିକ ଦକ୍ଷତା ପ୍ରଦର୍ଶନ କରିଚାଲିଛନ୍ତି। 'ବର୍ଗାକାର ଓ ବୃତ୍ତାକାର' ତାଙ୍କର ସ୍ମରଣୀୟ ଗଳ୍ପ ରଚନା।

ପ୍ରକାଶିତ କବିତା ସଂକଳନ: ଆଲୋକିତ ବନବାସ (୧୯୭୮), ମନ୍ତ୍ରପାଠ (୧୯୯୧), ଗର୍ଭଗୃହ (୧୯୯୩), ଦୂରତ୍ୱର ଭ୍ରମ (୧୯୯୪)।

## ଶକୁନ୍ତଳା ଦେବୀ (୧୯୪୫)

ନାରୀ ଜୀବନର ନିଃସଙ୍ଗତା, ବିଷାଦବୋଧ, ଐଶ୍ୱରୀୟ ଭାବ ଜିଜ୍ଞାସା ଆଦି ଭାବରାଜି ତାଙ୍କ କାବ୍ୟ ବୃତ୍ତକୁ ସମୃଦ୍ଧ କରିଛି। କବି 'ଅନନ୍ତ ଶୟନ' କବିତା ଗ୍ରନ୍ଥ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଛନ୍ତି।

ପ୍ରକାଶିତ କବିତା ସଂକଳନ: କାଚ ଝୁଲଣା (୧୯୭୬), ଭିଜାଗୟସ (୧୯୭୯), ବିପରୀତ ଲୋଟଣି (୧୯୮୧), ଅନନ୍ତ ଶୟନ (୧୯୮୬), ଶତାଭିଷେକ (୧୯୯୧)।

## ନୃସିଂହ ପ୍ରସାଦ ତ୍ରିପାଠୀ (୧୯୪୫)

କାବ୍ୟ- ଆତ୍ମିକରେ ସାମାଜିକ ପ୍ରତିବଦ୍ଧତା ଓ କାବ୍ୟ- ଆଙ୍ଗିକରେ ସଂଳାପ ପ୍ରବଣତା ଓ ପ୍ରତୀକାତ୍ମକତା ତାଙ୍କ କବିତାର ବୈଶିଷ୍ଟ୍ୟ। ବ୍ୟକ୍ତିଗତ ହତାଶା, ଦ୍ୱନ୍ଦ୍ୱ, ପ୍ରେମ, ମୃତ୍ୟୁ-ଚେତନା ଓ ସମାଜ ଚେତନା ମଧ୍ୟରେ ତାଙ୍କ କାବ୍ୟ ଜିଜ୍ଞାସା ପ୍ରତିଫଳିତ। କବିଙ୍କ କାବ୍ୟ ଚେତନାର ଭାବଭୂମି ଅନେକ ପରିମାଣରେ ସ୍ଥିତିବାଦୀ। ତଥାପି, ସମାଜରେ ମଣିଷପ୍ରତି ଅବିଚାର ଓ ମଣିଷର ଦୟନୀୟ ସ୍ଥିତି କବିଙ୍କ ମନରେ ଭାବାନ୍ତର ସୃଷ୍ଟି କରେ ଓ ସାମାଜିକ ବାସ୍ତବତାର ଚିତ୍ର ବ୍ୟଞ୍ଜନା ମଧ୍ୟରେ ପ୍ରକାଶ ପାଏ। କବିତା ବ୍ୟତୀତ ଗଳ୍ପରଚନା ଓ ପତ୍ରିକା ସମ୍ପାଦନାରେ ତାଙ୍କ ଦକ୍ଷତା ପ୍ରମାଣିତ।

ପ୍ରକାଶିତ କବିତା ସଂକଳନ: ପୂର୍ବ ଦିଗ (୧୯୮୦), ହେ ଈଶ୍ୱର ଉଠ (୧୯୮୩), ବୃକ୍ଷମଣା (୧୯୮୩), ନିଦ୍ରିତ ସନ୍ୟାସ (୧୯୮୯), ପର୍ବ (୧୯୯୨)।

## ଗୋପାଳ କୃଷ୍ଣ ରଥ (୧୯୪୫)

ଆଧୁନିକ ବ୍ୟକ୍ତି- ମାନସର ନିଃସଙ୍ଗତା, ଅସହାୟତା, କାରୁଣ୍ୟ ଆଦି ବହୁବିଧ ଭାବାନୁଭୂତି, ସମକାଳୀନ ପ୍ରଶାସନର ଭ୍ରଷ୍ଟାଚାର ଓ ପ୍ରତାରଣା ବିରୁଦ୍ଧରେ ବ୍ୟଙ୍ଗ ବିଦ୍ରୂପ ତଥା ମାନବବାଦୀ ସଂବେଦନାର ପରିପ୍ରକାଶରେ ତାଙ୍କ କାବ୍ୟ ଚେତନା ଋଦ୍ଧିମନ୍ତ।

ପ୍ରକାଶିତ କବିତା ସଂକଳନ: ଏକୁଲା ମଣିଷ (୧୯୮୦), କେତେଦୂର (୧୯୯୦)।

## ପ୍ରତିଭା ଶତପଥୀ (୧୯୪୫)

ନାରୀ ଜୀବନର ଅପୂର୍ଣ୍ଣତା, ସ୍ୱପ୍ନ, ଓ ଅଭୀପ୍ସାକୁ ରୂପଦେବାରେ କବିଙ୍କ କାବ୍ୟ ପ୍ରୟାସ ଅନନ୍ୟ। ଜୀବନର ନିଗୂଢ଼ତତ୍ତ୍ୱର ଆବେଗ ପ୍ରବଣ ଆନ୍ତରିକ ଉଚ୍ଚାରଣ, ଆତ୍ମିକ ସୌନ୍ଦର୍ଯ୍ୟ ଓ ମାନବାତ୍ମାର ଉତ୍ତରଣ ପ୍ରୟାସ ତାଙ୍କ କବିତାରେ ବିଭିନ୍ନ ଚିତ୍ରକଳ୍ପ, ପ୍ରତୀକ ଓ ମିଥ୍ ମାଧ୍ୟମରେ ସୂକ୍ଷ୍ମ କଳାତ୍ମକ ରୂପ ବହନ କରେ। 'ନିମିଷେ ଅକ୍ଷର' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଓ 'ଶବରୀ' ପାଇଁ ଶାରଳା ପୁରସ୍କାରରେ ସମ୍ମାନିତ। କବିତା ବ୍ୟତୀତ ଅନୁବାଦ ଓ ନାରୀ ସମସ୍ୟାମୂଳକ ଲଳିତ ରଚନାରେ ତାଙ୍କ ଦକ୍ଷତା ପ୍ରମାଣିତ। 'କଳ୍ପନାର ଅଭିଷେକ' ତାଙ୍କର ବହୁ ଆଦୃତ ନିବନ୍ଧ ଗ୍ରନ୍ଥ।

ପ୍ରକାଶିତ କବିତା ସଂକଳନ: ଅସ୍ତଚନ୍ଦ୍ରର ଏଲିଜି (୧୯୬୯), ଗ୍ରସ୍ତ ସମୟ (୧୯୭୪), ସାହାଡ଼ାସୁନ୍ଦରୀ (୧୯୭୮), ନିୟତ ବସୁଧା (୧୯୮୦), ନିମିଷେ ଅକ୍ଷର (୧୯୮୫), ମହାମେଘ (୧୯୮୮), ଶବରୀ (୧୯୯୧), ତନ୍ମୟଧୂଳି (୧୯୯୫)।

### ସଦାଶିବ ଦାଶ (୧୯୪୫)

ବାମପନ୍ଥୀ କାବ୍ୟ ଚେତନାରୁ ସମ୍ଭୂତ ତାଙ୍କ କବିତାରେ ସତତ ଏକ ବୈପ୍ଳବିକ ଆହ୍ୱାନ, ପ୍ରଚଳିତ ସାମାଜିକ ବ୍ୟବସ୍ଥା ପ୍ରତି ବ୍ୟଙ୍ଗ ବିଦ୍ରୂପ ତଥା ଏକ ନୂତନ ପୃଥିବୀ ନିର୍ମାଣର ସ୍ୱପ୍ନ ପରିଲକ୍ଷିତ। ସଂପ୍ରତି ତାଙ୍କ କବିତାରେ ମାନବବାଦୀ ସ୍ୱର ସ୍ପଷ୍ଟ।

ପ୍ରକାଶିତ କବିତା ସଂକଳନ: 'ଅ'ରୁ ଚନ୍ଦ୍ର ବିନ୍ଦୁ (୧୯୭୨), ମଳୟ ସନ୍ତ୍ରାସ (୧୯୭୪), ଷଷ୍ଠ ଚେତନା (୧୯୭୮), ଅକ୍ଷାଂଶ ଦ୍ରାଘିମା (୧୯୯୨), କାଳ ନିରବଧି (୧୯୯୩), ନିତ୍ୟପଦ୍ମତୋଳା (୧୯୯୪), ଅବଧୂତ କ୍ରାନ୍ତି (୧୯୯୫)।

### ଆଶୁତୋଷ ପରିଡ଼ା (୧୯୪୬)

ତାଙ୍କ କବିତାରେ କଳାଗତ କୃଷ୍ଟି ଓ ଭାବଗତ ଦୃଷ୍ଟି ବାରିହୋଇ ପଡ଼େ। ଏହି ପ୍ରଯୋଗବାଦୀ କବି ମାନବତାବାଦରେ ଅତୁଟ ବିଶ୍ୱାସ ପୋଷଣ କରନ୍ତି। କବିତାପ୍ରତି ଏକାନ୍ତ ନିଷ୍ଠାପର ଏହି କବିଙ୍କ ସାମାଜିକ ପ୍ରତିବଦ୍ଧତା ସ୍ପଷ୍ଟ। କବିତାଗ୍ରନ୍ଥ 'ଈପ୍‌ସିତ କ୍ରୋଧ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଛନ୍ତି।

ପ୍ରକାଶିତ କବିତା ସଂକଳନ: ଯୁକ୍ତ ଯାତନା(୧୯୭୩), ଈପ୍‌ସିତ କ୍ରୋଧ (୧୯୮୭), ଚଣ୍ଡାଳ (୧୯୯୧), ଶବ୍ଦଭେଦୀ (୧୯୯୫)।

### ପ୍ରସନ୍ନ କୁମାର ପାଟଶାଣୀ (୧୯୪୬)

ଏକ ବୈପ୍ଳବିକ ମାନବବାଦୀ ସ୍ୱର ସହ ରୋମାଣ୍ଟିକ ତଥା ଅତୀନ୍ଦ୍ରିୟ ଭାବାନୁଭୂତି, ମିନିକବିତା ଠାରୁ ଦୀର୍ଘ କବିତା ଯାଏଁ କବିତାର ଆଙ୍ଗିକରେ ବହୁ ପରୀକ୍ଷା ନିରୀକ୍ଷାରେ ତାଙ୍କ କାବ୍ୟଜଗତ ସମୃଦ୍ଧ। ସାଂପ୍ରତିକ କାଳର ସମାଜ ରାଜନୀତିକ ନାନାଦି ସମସ୍ୟା ଉପରେ ଆଶୁ କବିତା ରଚନାରେ ସେ ସିଦ୍ଧହସ୍ତ। 'ଦେଖାହେଲେ କହିବି ସେ କଥା' କାବ୍ୟ ଗ୍ରନ୍ଥପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ।

ପ୍ରକାଶିତ କବିତା ସଂକଳନ: ଆକାର କବିତା (୧୯୭୧), ଲେନିନ୍ (୧୯୭୨), ବାଘ ଆଁ ରେ ପିକ୍‌ନିକ୍ (୧୯୭୨), ବର୍ଷା (୧୯୮୦), ରକ୍ତପଥ (୧୯୮୦), ଅଗ୍ନିଯୁଗ (୧୯୮୨), ସାପଗାତରେ ସକାଳ (୧୯୮୪), ସାତ ମନ ତେର ଆକାଶ (୧୯୮୪), ପ୍ରସନ୍ନ ପାଟଶୋଣୀଙ୍କ ଏକଶତ ଏକ କବିତା (୧୯୮୬), ଦେଖାହେଲେ କହିବି ସେ କଥା (୧୯୯୧), ଆକାଶର କାଠଗଡ଼ାରେ ବନ୍ଦୀ ସୂର୍ଯ୍ୟଙ୍କୁ ଜେରା (୧୯୯୨)।

### ଦେବଦାସ ଛୋଟରାୟ (୧୯୪୬)

ସତୁରୀ ଦଶକରେ ଜଣେ ରୋମାଣ୍ଟିକ୍ କବିଭାବରେ ସ୍ୱୀକୃତି ଲାଭ କରିଥିବା ଏହି କବି କଟକ ସହର ଓ ମଲ୍ଲିକା ଚରିତ୍ରକୁ ଆଧାର କରି ରଚିତ କବିତାଗୁଡ଼ିକ ପାଇଁ ସ୍ମରଣୀୟ ରହିବେ। ସାଂଗୀତିକତା ତାଙ୍କ କବିତାର ବିଶେଷ ଆକର୍ଷଣୀୟ ଉପାଦାନ।

ପ୍ରକାଶିତ କବିତା ସଂକଳନ: ନୀଳସରସ୍ୱତୀ (୧୯୮୩)।

## ମମତା ଦାଶ (୧୯୪୭)

ଏକ ପାରମାର୍ଥିକ ସତ୍ତା ସହ ଏକାତ୍ମ ହେବାର ଐଶ୍ୱରୀୟ ଭାବ- ସଂବେଗ ପ୍ରମୁଖ ଭାବେ ତାଙ୍କ କବିତାର ଭାବ ଜଗତକୁ ସମୃଦ୍ଧ କରିଛି। ପ୍ରେମ, ସମୟ ଓ ଈଶ୍ୱରଙ୍କୁ ନେଇ ତାଙ୍କ କବିତା ସଂରଚିତ। ସମୟ ଓ ନିତ୍ୟକାଳ ମଧ୍ୟରେ ସମ୍ପର୍କ ତଥା ତହିଁରେ ମଣିଷର ସ୍ଥାନ ତାଙ୍କ କବିତାର ଭାବବସ୍ତୁ। 'ଏକତ୍ର ଚନ୍ଦ୍ରସୂର୍ଯ୍ୟ' ପୁସ୍ତକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତା।

ପ୍ରକାଶିତ କବିତା ସଂକଳନ: ନୈମିଶାରଣ୍ୟ (୧୯୮୧), ଏକତ୍ର ଚନ୍ଦ୍ରସୂର୍ଯ୍ୟ (୧୯୮୫), ଅବାକ୍ ସୂର୍ଯ୍ୟ (୧୯୮୯), ଉଜ୍ଜ୍ୱଳ ଉପବନ (୧୯୯୪)।

## ଅମରେଶ ପଟ୍ଟନାୟକ (୧୯୪୮)

ସମକାଳୀନ ସମାଜ ଓ ଜୀବନର ଛଳନା, କୃତ୍ରିମତା, ଫମ୍ପା ଆଭିଜାତ୍ୟ ପ୍ରତି ବ୍ୟଙ୍ଗ ଓ ଶ୍ଳେଷ ତଥା ମାନବିକ ସହୃଦୟତାର ପରିପ୍ରକାଶରେ ତାଙ୍କ ଭାବଜଗତ ସମୃଦ୍ଧ। ଶବ୍ଦ ଚୟନ ଓ ଶୈଳୀନେଇ ନୂଆ ନୂଆ ପରୀକ୍ଷା ତଥା ପ୍ରୟୋଗର ପ୍ରୟାସ ତାଙ୍କ କବିତାରେ ଲକ୍ଷଣୀୟ। ସାହିତ୍ୟ ସଂଗଠନ ଓ ସାମୟିକ ପତ୍ରିକା ସମ୍ପାଦନାରେ ତାଙ୍କ କୃତିତ୍ୱ ସ୍ୱୀକୃତ।

ପ୍ରକାଶିତ କବିତା ସଂକଳନ: ମନରୁ ମନକୁ (୧୯୭୬), ମଣିଷ ଆଗୁଳେ (୧୯୮୧), ସଂଧି ବିସଂଧି (୧୯୮୯), ଅବୁଦ୍ଧ ଗରୁଡ଼ (୧୯୯୪)।

## ମନୋରମା ବିଶ୍ୱାଳ ମହାପାତ୍ର (୧୯୪୮)

ବିଷାଦ, ପ୍ରେମ, ପ୍ରକୃତି ଓ ଅସୀମ ଜିଜ୍ଞାସା ନେଇ ଏକ ଆବେଗପ୍ରବଣ ରୋମାଣ୍ଟିକ ଭାବାନୁଭୂତି ମୁଖ୍ୟତଃ ତାଙ୍କ କାବ୍ୟବୃତ୍ତକୁ ନିର୍ମାଣ କରିଛି। ତାଙ୍କ କବିତାରେ ଗ୍ରାମ୍ୟଜୀବନ ଓ ନିଜର କୈଶୋର ପ୍ରତି ମୋହ ସ୍ପଷ୍ଟ ବାରିହୁଏ। ସରଳ ଓ ସାବଲୀଳ ପ୍ରକାଶ ଭଙ୍ଗୀ ଓ ନାରୀସୁଲଭ କୋମଳତା ତାଙ୍କ କବିତାକୁ ଆବେଦନକ୍ଷମ କରିଛି।

ପ୍ରକାଶିତ କବିତା ସଂକଳନ: କିଶଳୟ (୧୯୬୩), ବ୍ରତତୀ (୧୯୬୬), ଫୁଲଫୁଟା ମୁହୂର୍ତ୍ତ (୧୯୭୮), ସ୍ମୃତି, ଶ୍ରାବଣ ଓ ପ୍ରତିବିମ୍ବ (୧୯୭୮), ସ୍ୱାତୀ ଲଗ୍ନ (୧୯୭୯), ଜହ୍ନରାତିର ମୁହଁ (୧୯୮୧), ଏକଲା ନଈର ଗୀତ (୧୯୯୦), ଥରେ ଖାଲି ଡାକିଦେଲେ (୧୯୯୨), ଶବ୍ଦର ପ୍ରତିମା (୧୯୯୪)।

## ସୌଭାଗ୍ୟବନ୍ତ ମହାରଣା (୧୯୫୧)

ଆଧୁନିକ ଜୀବନର ଶୂନ୍ୟତା, ଅର୍ଥହୀନତା ଓ ସମୟର ପ୍ରତିଧ୍ୱନି ତାଙ୍କ କବିତାରେ ପ୍ରତିଫଳିତ। କିଛି କବିତାରେ ସାମାଜିକ ବିରୋଧାଭାସ ପ୍ରତି ସଚେତନତା ଓ ମାନବବାଦୀ ଦୃଷ୍ଟିଭଙ୍ଗୀ ପ୍ରକାଶିତ।

ପ୍ରକାଶିତ କବିତା ସଂକଳନ: ଶାଗୁଆ କ୍ଷତର ସହର (୧୯୮୮), ଅନାବୃତ୍ତ ଅଜ୍ଞାତବାସ (୧୯୯୫)।

### ଶୁଭେନ୍ଦୁ ମୁଣ୍ଡ (୧୯୫୧)
ପ୍ରକୃତି, ଦେହବୋଧ ଓ ପାର୍ଥିବ ବିଳାସ ଦେଇ ଏକ ଭିନ୍ନ ଭାବଜଗତକୁ ଚାଲିଯିବାର ପ୍ରବଣତା ତାଙ୍କର ଅଧିକାଂଶ କବିତାରେ ପ୍ରତିଫଳିତ।

ପ୍ରକାଶିତ କବିତା ସଂକଳନ: ଶବ୍ଦ ନିଃଶବ୍ଦ (୧୯୮୩), ମୁହୂର୍ତ୍ତଟିଏ ମୋହିନୀ (୧୯୮୭)।

### ଭଗବାନ ଜୟସିଂହ (୧୯୫୨)
ଜୀବନର ଅସହାୟତା ଓ ମଳିନ ସ୍ଥିତିରୁ ଉତ୍ତୀର୍ଣ୍ଣ ହେବାପାଇଁ ଆକୁଳତା, ସାଂପ୍ରତିକ କାଳର ଦୁଃସ୍ଥିତି, ମୃତ୍ୟୁବୋଧ ଆଦି ବହୁ ସୂକ୍ଷ୍ମ ଜଟିଳ ଅନୁଚିନ୍ତା ତାଙ୍କ କବିତାରେ ପରିଲକ୍ଷିତ। କବିତା ସମ୍ପର୍କୀୟ ସମୀକ୍ଷାତ୍ମକ ଆଲୋଚନାରେ ସେ ସ୍ୱକୀୟତା ପ୍ରଦର୍ଶନ କରିଛନ୍ତି।

ପ୍ରକାଶିତ କବିତା ସଂକଳନ: ନିର୍ବାସନରେ ପକ୍ଷୀ (୧୯୮୭), ଘୋଷଯାତ୍ରା (୧୯୯୪)।

### ଅପର୍ଣ୍ଣା ମହାନ୍ତି (୧୯୫୨)
ନାରୀ ମନର ବହୁବିଧ ଭାବ, ପ୍ରେମ ଭାବନା ଓ ନାରୀ ସତ୍ତାର ସାମାଜିକ ସ୍ଥିତି ଓ ସ୍ୱୀକୃତି ପାଇଁ ବ୍ୟାକୁଳତା ଓ ବିଦ୍ରୋହୀ ସ୍ୱର ତାଙ୍କ କବିତା ଜଗତକୁ ସମୃଦ୍ଧ କରିଛି। ସଂଗୀତ ପ୍ରତି ଅନୁରାଗ ସ୍ୱାଭାବିକ ଭାବେ ତାଙ୍କ କବିତାକୁ ସାଂଗୀତିକତା ପ୍ରଦାନ କରିଛି।

ପ୍ରକାଶିତ କବିତା ସଂକଳନ: ଅବ୍ୟକ୍ତ ଆତ୍ମୀୟତା (୧୯୯୧), ଅସତୀ (୧୯୯୩)।

### ଅଶ୍ୱିନୀ କୁମାର ମିଶ୍ର (୧୯୫୩)
ସାଂପ୍ରତିକ ବ୍ୟକ୍ତି ମାନସର ସ୍ଥିତି ନେଇ ଅସହାୟତା ଓ କାରୁଣ୍ୟ, ସମକାଳର ସମାଜ ଓ ଶାସନ ବ୍ୟବସ୍ଥା ପ୍ରତି ବ୍ୟଙ୍ଗ, ସାଧାରଣ ମଣିଷର ଆର୍ତ୍ତିପାଇଁ ସଂବେଦନା ତାଙ୍କ କବିତାର ବିଶେଷତ୍ୱ। କବିତା ସଂପର୍କୀୟ ଆଲୋଚନା, ପତ୍ରିକା ସଂପାଦନା ଓ ଅନୁବାଦରେ ସେ ତାଙ୍କ ଦକ୍ଷତା ପ୍ରମାଣିତ କରିଛନ୍ତି।

ପ୍ରକାଶିତ କବିତା ସଂକଳନ: ନଖ ଦର୍ପଣ (୧୯୭୯), ଚନ୍ଦ୍ର ବଂଧନୀ, ସାକ୍ଷାତର ଦିନ (୧୯୮୯), ବନବାସ ଓ ଅନ୍ୟାନ୍ୟ କବିତା (୧୯୯୫)।

### ହରପ୍ରସାଦ ପରିଚ୍ଛା ପଟ୍ଟନାୟକ (୧୯୫୩)
ଆଧୁନିକ ବ୍ୟକ୍ତି ମାନସର ଅସହାୟତା, ଅଶ୍ରୁ- ଆକୁଳତା, ସହରୀ ଜୀବନର ଯନ୍ତ୍ରଣା, ନିମ୍ନ ବର୍ଗର ମଣିଷ ପାଇଁ ସଂବେଦନା ତାଙ୍କ କବିତାର ବିଶେଷ ଦୃଷ୍ଟିଭଙ୍ଗୀ ଓ ଆଭିମୁଖ୍ୟ। ସାଂଗୀତିକତା ମାଧ୍ୟମରେ କବିତାର ଉଚ୍ଚାରଣକୁ ଆବେଦନକ୍ଷମ କରିବାରେ ତାଙ୍କ ନିଷ୍ଠାପର ପ୍ରୟାସ ପ୍ରଣିଧାନଯୋଗ୍ୟ। କବିତାପାଇଁ 'ଉତ୍କଳ ସମ୍ମାନ' ପୁରସ୍କାର ପ୍ରାପ୍ତ। କେତେକ ସାମୟିକ ଇଂରାଜୀ ପତ୍ରିକାର ସମ୍ପାଦନା ଓ ଇଂରାଜୀ ଅନୁବାଦରେ ତାଙ୍କ ଦକ୍ଷତା ପ୍ରମାଣିତ।

ପ୍ରକାଶିତ କବିତା ସଂକଳନ: ଏକା ଏକା ସନ୍ୟାସୀ (୧୯୮୨), ଅଥୟ ସୂର୍ଯ୍ୟ (୧୯୯୨), ଆୟୁଷ୍ମାନ ସମୟ (୧୯୯୪)।

**ରୋହିଣୀକାନ୍ତ ମୁଖାର୍ଜୀ (୧୯୫୪)**

**ସାଂପ୍ରତିକ ସମୟର ବିଶ୍ୱସ୍ତ ଚିତ୍ର, ବ୍ୟକ୍ତିର ନିଃସଙ୍ଗତା ଓ ବହୁଧା ବିଭକ୍ତ ସତ୍ତା ସମ୍ପର୍କରେ ଚିନ୍ତନ ତାଙ୍କ କବିତାରେ ଲକ୍ଷ୍ୟ କରାଯାଏ। କବିତା ସମ୍ପର୍କୀୟ ଆଲୋଚନାରେ ସେ ନିଜର ଦକ୍ଷତା ପ୍ରଦର୍ଶନ କରିଛନ୍ତି।**

ପ୍ରକାଶିତ କବିତା ସଂକଳନ: ଗଭୀର ନିଦରେ ଦିନେ (୧୯୮୯)।

**ରଂଜିତା ନାୟକ (୧୯୫୫)**

ନାରୀ ଜୀବନର କାରୁଣ୍ୟ, ଅସହାୟତା, ପ୍ରେମ, ବିଷାଦ ଆଦି ଭାବ ତାଙ୍କ କବିତାରେ ରୂପାୟିତ। କବିତା ବ୍ୟତୀତ ସମାଲୋଚନା ଓ ଅନୁବାଦରେ ମଧ୍ୟ ତାଙ୍କ କୃତିତ୍ୱ ପ୍ରମାଣିତ।

ପ୍ରକାଶିତ କବିତା ସଂକଳନ: ଅଶାନ୍ତ ଅପରାହ୍ଣ (୧୯୮୯), ଦୃଶ୍ୟ ଦୃଶ୍ୟାନ୍ତର (୧୯୯୨)।

**ହୃଷୀକେଶ ମଲ୍ଲିକ (୧୯୫୫)**

ଗାଆଁର ଭାଷା, ଗାଆଁର କଣ୍ଠ ଓ ସବୁଜ ଚିତ୍ରକୁ କାବ୍ୟାୟିତ କରିବାରେ କବି ସିଦ୍ଧହସ୍ତ। ପ୍ରକାଶଭଙ୍ଗୀ ଖୁବ୍ ସରଳ ଓ ସ୍ୱଚ୍ଛ। ଅବକ୍ଷୟଶୀଳ ପଲ୍ଲୀର ଅସ୍ତିତ୍ୱକୁ 'ଧାନ ସାଉଁଟା ଝିଅ' କବିତା ଗ୍ରନ୍ଥରେ ସେ ସଫଳଭାବେ ରୂପାୟିତ କରିଛନ୍ତି। କାବ୍ୟ ଭାଷାରେ ଗ୍ରାମ୍ୟ ଶବ୍ଦାବଳୀର ପ୍ରୟୋଗ ତାଙ୍କ କବିତାକୁ ଚମତ୍କାର ଛାନ୍ଦିକ ସୁଷମା ପ୍ରଦାନ କରିଛି। କବିତା ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ।

ପ୍ରକାଶିତ କବିତା ସଂକଳନ: ଧାନ ସାଉଁଟା ଝିଅ (୧୯୮୭), ଉଜୁଡ଼ା କ୍ଷେତର ଗୀତ (୧୯୯୦)।

**ଶତ୍ରୁଘ୍ନ ପାଣ୍ଡବ (୧୯୫୫)**

ଜୀବନର ବିବିଧତା ଓ ବୈଚିତ୍ର୍ୟପ୍ରତି ଏକ ଦାର୍ଶନିକ ଦୃଷ୍ଟିଭଙ୍ଗୀ, ରୂପ ଓ ରୂପୋତ୍ତର ପ୍ରତି ମୋହ, ଓ ମାନବିକ ସଂବେଦନାର ପ୍ରତିଫଳନ ତାଙ୍କ କବିତାରେ ବିଶେଷ ଭାବେ ପରିଲକ୍ଷିତ। ମନୋଜ ଦାସଙ୍କ କଥା ସାହିତ୍ୟ ଓ ଆଧୁନିକ କବିତା ସଂପର୍କୀୟ ଆଲୋଚନାରେ କବି ମୌଳିକତା ପ୍ରଦର୍ଶନ କରିଛନ୍ତି।

ପ୍ରକାଶିତ କବିତା ସଂକଳନ: ନିଃଶ୍ୱାସର ତାଳପତ୍ର (୧୯୮୩), ପଦ୍ମ ପାଲିଙ୍କି (୧୯୯୫)।

**ହୃଦାନନ୍ଦ ପାଣିଗ୍ରାହୀ (୧୯୫୫)**

ପ୍ରେମ, ବିଷାଦ, କାରୁଣ୍ୟ, ସ୍ମୃତିଚାରଣ ଆଦି ରୋମାଣ୍ଟିକ୍ ଭାବଧାରାସହ ସମକାଳୀନ ସମୟର ଦୁଃସ୍ଥିତି ଓ ଯନ୍ତ୍ରଣାର ଚିତ୍ର ତାଙ୍କ କବିତା ବହନ କରେ।

ପ୍ରକାଶିତ କବିତା ସଂକଳନ: ଅନନ୍ତ ପ୍ରେମର ଗୀତ (୧୯୯୦), ଲୁହର ଟୋପାଏ ଜହ୍ନ (୧୯୯୧), ନଷ୍ଟ ପାଦ (୧୯୯୪)।

**ପ୍ରବାସିନୀ ମହାକୁଡ଼ (୧୯୫୫)**

ସ୍ୱପ୍ନ, ସ୍ମୃତି, ମିଳନ, ବିରହ ଓ ବିଷଣ୍ଣତାବୋଧକୁ କେନ୍ଦ୍ରକରି ବହୁ ରୋମାଣ୍ଟିକ୍ ଅନୁଭୂତିରେ ତାଙ୍କ କବିତାର ଭାବଜଗତ ସମୃଦ୍ଧ। ନାରୀସୁଲଭ କୋମଳ ଭାବାବେଗ ଓ ସାବଲୀଳ ପ୍ରକାଶ ଭଙ୍ଗୀ ତାଙ୍କ କବିତାକୁ ପ୍ରାଣସ୍ପର୍ଶୀ କରିଥାଏ।

ପ୍ରକାଶିତ କବିତା ସଂକଳନ: ମୁହୂର୍ତ୍ତ ମୁହୂର୍ତ୍ତ (୧୯୯୦), ଆଧାରଶିଳା (୧୯୯୪)।

**ପ୍ରସନ୍ନ କୁମାର ମହାନ୍ତି (୧୯୫୬)**

ରୋମାଣ୍ଟିକ ଭାବାନୁଭୂତି, ପ୍ରେମ, ଜୀବନ, ମୃତ୍ୟୁ ତଥା ଐଶ୍ୱରୀୟ ଭାବଧାରା ନେଇ ତାଙ୍କ କବିତା ବିଶେଷ ସମୃଦ୍ଧ। କବିତା ବ୍ୟତୀତ ଆଲୋଚନା ଓ ଫିଚର ରଚନାରେ ତାଙ୍କ ଦକ୍ଷତା ପ୍ରମାଣିତ।

ପ୍ରକାଶିତ କବିତା ସଂକଳନ: ନିର୍ବାସନରୁ ଶବ୍ଦ (୧୯୮୧), ପ୍ରତ୍ୟୟର ପରିଧି (୧୯୯୩)।

**ଅମରେନ୍ଦ୍ର ଖଟୁଆ (୧୯୫୭)**

ସାଂପ୍ରତିକ ବ୍ୟକ୍ତି ମାନସର ଅସହାୟତା, ଦ୍ୱନ୍ଦ୍ୱ, ଜଟିଳତା ପରି ବହୁବିଧ ଭାବରାଜି ତାଙ୍କ କବିତାରେ ପ୍ରତିଫଳିତ। ଆଧୁନିକବାଦୀ କାବ୍ୟଧାରାର ବୌଦ୍ଧିକ ପ୍ରାବଲ୍ୟ ତାଙ୍କ କବିତାକୁ ଦୁର୍ବୋଧ କରିଥିଲେ ବି ଶବ୍ଦ-ଯୋଜନାର ମୌଳିକତା ତାଙ୍କ କବିତାରୁ ବାରି ହୋଇପଡ଼େ।

ପ୍ରକାଶିତ କବିତା ସଂକଳନ: ଶବ୍ଦଙ୍କ ନିରାପତ୍ତା (୧୯୮୪), ସମ୍ମୋହିତ ସ୍ୱୀକୃତି, ସମର୍ଥ ବିପର୍ଯ୍ୟୟ।

**ଭାଗୀରଥି ମିଶ୍ର (୧୯୫୮)**

ଆଧୁନିକ ଜୀବନର ବହୁବିଧ ଭାବାନୁଭୂତି, ପ୍ରଚଳିତ ସମାଜ ବ୍ୟବସ୍ଥା ପ୍ରତି ବ୍ୟଙ୍ଗ ତାଙ୍କ କବିତାରେ ବିଶେଷ ଲକ୍ଷଣୀୟ। ଏହି କବି ୧୯୮୦ରୁ ଓଡ଼ିଶାର ପତ୍ର ପତ୍ରିକାମାନଙ୍କରେ ଧାରାବାହିକ ଭାବେ କବିତା ଲେଖି ଆସୁଛନ୍ତି।

**ସୂର୍ଯ୍ୟ ମିଶ୍ର (୧୯୬୦)**

ସାଂପ୍ରତିକ କାଳର ବ୍ୟକ୍ତି ମାନସର ଦୁଃଖ, ନିଃସଙ୍ଗତାବୋଧ, କାରୁଣ୍ୟ ଏବଂ ସେଥିରୁ ମୁକ୍ତି ପାଇବାର ଆକୁଳତା ତାଙ୍କ କବିତାରେ ପ୍ରତିଫଳିତ। ଏହା ବ୍ୟତୀତ ଅନୁବାଦ ଓ ସାହିତ୍ୟ ସଂଗଠନ କାର୍ଯ୍ୟରେ ମଧ୍ୟ ତାଙ୍କ ଦକ୍ଷତା ପ୍ରଦର୍ଶିତ।

ପ୍ରକାଶିତ କବିତା ସଂକଳନ: ସାତବର୍ଣ୍ଣର ସକାଳ (୧୯୯୦), ଏକା ଏକା ସହବାସ (୧୯୯୪)।

## ପ୍ରଦୀପ ବିଶ୍ୱାଳ (୧୯୬୦)

ରୋମାଣ୍ଟିକ୍ ଭାବଧାରା ସହିତ ସମାଜ ସଚେତନତା ତାଙ୍କ କବିତାରେ ଲକ୍ଷ୍ୟ କରାଯାଏ। ସାଂପ୍ରତିକ ସମୟର ନାନାଦି ସମସ୍ୟା, ମାଟି ଓ ମଣିଷ ପ୍ରତି ସମ୍ବେଦନା ତାଙ୍କ କବିତାରେ ପ୍ରତୀକାତ୍ମକ ରୂପ ଗ୍ରହଣ କରେ।

ପ୍ରକାଶିତ କବିତା ସଂକଳନ: ଧୂସର ଧ୍ରୁପଦୀ (୧୯୯୧), ଭୂମିସ୍ପର୍ଶ (୧୯୯୪)।

## ମାନସ ରଂଜନ ମହାପାତ୍ର (୧୯୬୦)

ମାଟି ଓ ମଣିଷ ପାଇଁ ଏକ ଆନ୍ତରିକ ଶ୍ରଦ୍ଧା, ସଂବେଦମୟ ସଚେତନତା ତାଙ୍କ କବିତାରେ ବିଶେଷ ଭାବେ ପ୍ରକଟିତ। ଶିଶୁ ସାହିତ୍ୟ ପୁସ୍ତକର ଅନୁବାଦ, ସାହିତ୍ୟ ସମାଲୋଚନା ଓ ସମ୍ପାଦନାରେ ମଧ୍ୟ କୃତିତ୍ୱ ପ୍ରଦର୍ଶିତ।

ପ୍ରକାଶିତ କବିତା ସଂକଳନ: ମାଟିଠୁ ଆକାଶ ପର୍ଯ୍ୟନ୍ତ (୧୯୯୨), ଚିତ୍ରକରର ସକାଳ (୧୯୯୨), ଆମେ ଦୁହେଁ ସମୟ ସାମ୍ନାରେ (୧୯୯୪)।

## ସୁଚେତା ମିଶ୍ର (୧୯୬୫)

ଆଧୁନିକ ଜୀବନବୋଧର ମାର୍ମିକ ଉଚ୍ଚାରଣ- ନାରୀ ଚେତନାର ଶାଣିତ ପ୍ରକାଶ ଓ ସଂବେଦନଶୀଳତାରେ ତାଙ୍କ ସ୍ୱର ଓତଃପ୍ରୋତ। ବହୁ କବିତାରେ ସାମାଜିକ ଅନ୍ୟାଚାର ବିରୁଦ୍ଧରେ ପ୍ରତିକ୍ରିୟା ଓ ପ୍ରତିବାଦର ସ୍ୱର ଶୁଣିବାକୁ ମିଳେ।

ପ୍ରକାଶିତ କବିତା ସଂକଳନ: ପୂର୍ବରାଗ (୧୯୯୧), ଶିଳାଲିପି (୧୯୯୫)।